


**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

**ସମ୍ପାଦିକା**

**ଅନସୂୟା ନନ୍ଦ**

✤✤✤

**୬୩ ବର୍ଷ, ତୃତୀୟ ସଂଖ୍ୟା**
**ଅକ୍ଟୋବର, ୨୦୧୩**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www:odishapublication.com


ଅନ୍ୟାନ୍ୟ ବିଭାଗର ଲେଖକ--
**ରାମଚନ୍ଦ୍ର ସାହୁ; ନାରାୟଣ ଚନ୍ଦ୍ର ନନ୍ଦ**



## ଆମ ଚିଠିମୁଣିରୁ

**ପଞ୍ଚୁପଲ୍ଲୀ, ରେଢ଼ଙ୍ଗ, ଖୋର୍ଦ୍ଧାରୁ ଚନ୍ଦ୍ରକାନ୍ତ ସୁବୁଦ୍ଧି**-- ସେପ୍‌ଟେମ୍ବର ସଂଖ୍ୟା ସଂସାର ପଢ଼ିଲି। 'ଶବ୍ଦ ସେଇ ଅର୍ଥ ଦୁଇ' ପ୍ରଶଂସନୀୟ। ବାସ୍ତବରେ ଶିଶୁଲେଖା ବା ଶିଶୁ ସାହିତ୍ୟର ଅର୍ଥ ନୁହେଁ ଶିଶୁକୁ ଶିଶୁ କରି ରଖିବା। ଶିଶୁକୁ ବୁଦ୍ଧତ୍ୱ ବା ପରିପକ୍ୱତା ସ୍ଥିତିରେ ପହଞ୍ଚାଇବା ପର୍ଯ୍ୟନ୍ତ ଶିଶୁ ସାହିତ୍ୟର ଧାରା ଅବ୍ୟାହତ ରହିବା ଉଚିତ।

**ଧୂମାଭଟା, ବେଲପଡ଼ା, ବଲାଙ୍ଗିରରୁ ସୁବାସ ବୋଷ ଭୋଇ**- ପତ୍ରିକାର ଭିତର ପାର୍ଶ୍ୱ ଫାଙ୍କା ନ ଛାଡ଼ି କିଛି ଚିତ୍ର ବା ଡ୍ରଇଂ ରହିଲେ ଭଲ ହୁଅନ୍ତା ଏବଂ ପତ୍ରିକା ସୁଦୃଶ୍ୟ ଓ ମନୋଲୋଭା ହୁଅନ୍ତା।

**କେନ୍ଦ୍ରୀୟ ବିଦ୍ୟାଳୟ, ଭଦ୍ରକରୁ କମଳ କୁମାର ସାହୁ**-- ମହାନ୍ ବୈୟାକରଣିକ 'ପାଣିନି' ପ୍ରସଙ୍ଗଟି ଚମତ୍କାର ହୋଇଛି କିନ୍ତୁ ଏହାର ଶେଷ ୩ଟି ଅନୁଚ୍ଛେଦ ଅପ୍ରାସଙ୍ଗିକ ବୋଧ ହେଉଛି। ଅଷ୍ଟାଧ୍ୟାୟୀ ଗ୍ରନ୍ଥରୁ ପର୍ଯ୍ୟାପ୍ତ ଉଦାହରଣ ଦେଇ ଆଲୋଚନା କରିଥିଲେ ପାଠକର ଜିଜ୍ଞାସା ଓ କୌତୂହଳ ପ୍ରଶମିତ ହୋଇଥା'ନ୍ତା ।

**ଅରୁଣୋଦୟ ନଗରରୁ ଡ. ଅଜିତାନନ୍ଦ ଗୋସ୍ୱାମୀ**-- ସଂସାରରେ ପ୍ରକାଶିତ 'ରେଡ୍ ଉଡ୍ ଫରେଷ୍ଟ'-- ଶୀର୍ଷକ ଲେଖାର ସମସ୍ତ ବିଷୟ 'ଫରେଷ୍ଟ ଅନ୍ ଦି ଆର୍ଥ ଲ୍ୟାଣ୍ଡ' ନାମକ ପୁସ୍ତକରେ ରହିଛି; ମାତ୍ର ଲେଖାଟିରେ ଥିବା ସବୁଠାରୁ ବଡ଼ ଗଛ 'BOOBAB' ପରିବର୍ତ୍ତେ ସର୍ବବୃହତ୍ତମ 'BAOBAB' ବୃକ୍ଷ ବୋଲି ଉଲ୍ଲେଖ ହୋଇଛି। ଏହି ବୃକ୍ଷ ଉପରେ ମଧ୍ୟ ଏକ ସୁନ୍ଦର ଆରବୀୟ ଲୋକକଥା ରହିଛି।

**ଭଣ୍ଡାରୀ ପୋଖରୀରୁ ରମାକାନ୍ତ ବେହେରା**-- ଏହି ପତ୍ରିକାରୁ ମୁଁ ଜାଣିଲି ଏହା ୬୦ ବର୍ଷର ପତ୍ରିକା। ପ୍ରକୃତରେ ଏଭଳି ଏକ (ସର୍ବ ପୁରାତନ) ଓଡ଼ିଶାର ପତ୍ରିକା ନିୟମିତ ପାଠକମାନଙ୍କ ନିକଟରେ ପହଞ୍ଚି ପାରୁଛି, ତାହା ହିଁ ଗୌରବର କଥା। ଈଶ୍ୱର ଏଥିପାଇଁ ସଂସାର-ପରିବାରକୁ ସହାୟ ହୁଅନ୍ତୁ।

### ❀❀ ଅଭିନନ୍ଦନ ❀❀

ସଂସାରର ନିୟମିତ ଲେଖକ ତଥା ଶିଶୁ ସାହିତ୍ୟିକ ଡକ୍ଟର କୃତ୍ତିବାସ ନାୟକ ଆକାଶବାଣୀର ବାର୍ଷିକ ପ୍ରଥମ ବୈଜୟନ୍ତୀ ପୁରସ୍କାର ଲାଭ କରିଛନ୍ତି ଏବଂ ଆମର ପରିଚିତ ଲେଖକ ଶ୍ରୀ ଲକ୍ଷ୍ମଣ ମଲ୍ଲିକ ଚଳିତ ବର୍ଷ କୃତୀ ଶିକ୍ଷକ ହିସାବରେ ରାଷ୍ଟ୍ରପତି ପୁରସ୍କାର ଲାଭ କରିଛନ୍ତି।

ଏମାନଙ୍କର ଗୌରବ ଆମର 'ସଂସାର ପରିବାର'ର ଗୌରବ। ସେମାନଙ୍କର ଚଲାପଥ କୁସୁମିତ ହେଉ ଓ ତାଙ୍କର ଜୀବନ ଏହିଭଳି କୃତିରେ ଉଜ୍ଜ୍ୱଳତା ଲାଭ କରୁ-- କାମନା କରିବା ସହିତ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛୁ।

**--ସମ୍ପାଦିକା, ସଂସାର**

**ଲିଙ୍କ୍‌ରୋଡ୍‌ରୁ ବାସୁଦେବ ଥାଟୋଇ** -- ସଂସାରର ନିର୍ଭୁଲ୍ ଓ ନିଆରା କଳେବର ଲେଖକ, ଲେଖିକା, ପାଠକ ଓ ପାଠିକାଙ୍କର ଆଦର୍ଶ ଓ ପ୍ରେରଣାର ଉତ୍ସ। ସେହି ପରମ ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ଶ୍ରାଦ୍ଧ ଦିବସରେ ସଂସାରର ଷାଠିଏତମ ବାର୍ଷିକୋତ୍ସବ ଅବସରରେ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି।

**ଉତ୍ତରପଡ଼ା, ଅନୁଗୋଳରୁ ନରେଶ ଚନ୍ଦ୍ର ବେହେରା**-- ସଂସାର ୬୨ଟି ପାହାଚ ଅତିକ୍ରମ କରି ୬୩ତମ ପାହାଚରେ ପଦାର୍ପଣ କରିଥିବାରୁ ଅନେକ ଅଭିନନ୍ଦନ। ନୂଆ ବେଶରେ ବେଶ୍ ଭଲ ଲାଗୁଛି। ପ୍ରତିଟି ଲେଖା ମନକୁ ଛୁଇଁ ଛୁଇଁ ଯାଉଛି। ମୂଲ୍ୟବୃଦ୍ଧି ସଂସାର ପାଇଁ ବାଧକ ହେବନାହିଁ। ପୂର୍ବପରି ତା'ର ମାନ ଅକ୍ଷୁଣ୍ଣ ରହିବ।

**ଏ ମାସର ପ୍ରଚ୍ଛଦ-** 'ପୃଥିବୀର ସବୁଠାରୁ ଦୀର୍ଘତମ ସ୍ମୃତିସ୍ତମ୍ଭ' ବିଷୟରୁ 'କ୍ରେସେଣ୍ଟ୍ ମୁନ୍'ର ଚିତ୍ର ପ୍ରଦତ୍ତ।

# ଶାଶ୍ୱତ ଚେତନା

ଶ୍ରୀ ଶୁଭକାନ୍ତ ସାହୁ

କଳିଙ୍ଗ ଯୁଦ୍ଧ ପରର ଘଟଣା। ଯୁଦ୍ଧର ଭୟାବହ ପରିଣତି ସ୍ୱରୂପ ଲକ୍ଷ ଲକ୍ଷ ପାଇକଙ୍କ ମୃତଦେହ, ମୃତାହତ ପାଇକଙ୍କ ଦେହରୁ ଝରି ଆସିଥିବା ରକ୍ତସ୍ରୋତ, ଲକ୍ଷ ଲକ୍ଷ ଓଡ଼ିଶାବାସୀ, ବାଳୁତ ବୃଦ୍ଧ, ବୃଦ୍ଧାଙ୍କ କ୍ରନ୍ଦନରୋଳ ସେଦିନ ଅଶୋକଙ୍କ ହୃଦୟକୁ ତରଳାଇ ଦେଇଥିଲା। ବିଚଳିତ ହୋଇ ଉଠୁଥିଲେ ସେ। "ହିଂସା ପ୍ରଣୋଦିତ ତରବାରିର ଜୟ ପ୍ରକୃତ ଜୟ ନୁହେଁ ବୋଲି ମର୍ମେ ମର୍ମେ ଅନୁଭବ କରୁଥିଲେ। ଏତିକିବେଳେ କାହାରି କୋମଳ କଣ୍ଠ ଉଚ୍ଚାରିତ, "ଧମ୍ମଂ ଶରଣଂ ଗଚ୍ଛାମି......." ଧ୍ୱନିରେ ଚମକି ପଡ଼ିଲେ ସେ। ଗୈରିକ ବସନ ପରିହିତା ସୁଶ୍ରୀ ତରୁଣୀ ସନ୍ନ୍ୟାସିନୀ ଜଣଙ୍କ ଅଶୋକଙ୍କ ପୃଷ୍ଠଭାଗରେ ଦଣ୍ଡାୟମାନ ହୋଇ ସ୍ମିତ ହାସ୍ୟବଦନରେ ଗାଇ ଚାଲିଥିଲେ ବୌଦ୍ଧ ସଂଘ ମନ୍ତ୍ର। କିଛି କାଳ ସନ୍ନ୍ୟାସିନୀଙ୍କୁ ନୀରବରେ ଚାହିଁବା ପରେ ଧୀରେ ଧୀରେ ସନ୍ନ୍ୟାସିନୀଙ୍କ କଣ୍ଠ ଉଚ୍ଚାରିତ ଶବ୍ଦକୁ ଅନୁକରଣ, ଅନୁରଣନ କରିବାକୁ ଲାଗିଲେ। ତାଙ୍କ ହସ୍ତରୁ ଶାଣିତ ତରବାରୀ ଖସି ପଡ଼ିଲା।

ବୌଦ୍ଧ ଧର୍ମ ପ୍ରବାହରେ ସେ ହୃଦୟର ଜୟ ହିଁ ପ୍ରକୃଷ୍ଟ ଓ ପ୍ରକୃତ ଜୟ ହିଁ ବାସ୍ତବ ବୋଲି ହୃଦୟଙ୍ଗମ କଲେ ଅଶୋକ। ପରେପରେ ସେ ତମାମ୍ ଜୀବନ ଲାଗିପଡ଼ିଲେ ବୌଦ୍ଧ ଧର୍ମ ପ୍ରସାରରେ। ନିଜର ଅଳିଅଳୀ କନ୍ୟା ସଂଘମିତ୍ରାଙ୍କୁ ଜନୈକା ପ୍ରଚାରିକା ସନ୍ନ୍ୟାସିନୀ ଭାବରେ ଶ୍ରୀଲଙ୍କା ପ୍ରେରିତ କଲେ।

ବିଧାତାର ଲୀଳାଖେଳା ବଡ଼ ବିଚିତ୍ର। ସଦାସର୍ବଦା ନୂତନତ୍ୱକୁ ପୁରାତନପନ୍ଥୀମାନେ ସହଜରେ ଗ୍ରହଣ କରିନ ଥାନ୍ତି। ଯୁଗେ ଯୁଗେ ଆଲୋକଦାୟୀଙ୍କ ଉପରେ ସଂଘଟିତ କାହାଣୀ ବିରଳ ନୁହେଁ। ସଂଘମିତ୍ରାଙ୍କୁ ମଧ୍ୟ ଏଇ ପୁରାତନପନ୍ଥୀଙ୍କ ଅକାରଣ ରୋଷର ଶିକାର ହେବାକୁ ପଡ଼ିଲା।

ଶ୍ରୀଲଙ୍କାରେ ବୁଦ୍ଧଙ୍କ ବାଣୀ ପ୍ରଚାରିତ ହେଲା। ଅକ୍ଳାନ୍ତ ପରିଶ୍ରମ କରି ସଂଘମିତ୍ରା ସଫଳତାର ଜୟଯାତ୍ରା ଭିତରେ ବୁଦ୍ଧଦେବଙ୍କୁ ପ୍ରତିଷ୍ଠା କରି ଚାଲିବାରେ ସକ୍ଷମ ହେଲେ। ମାତ୍ର ଅନ୍ୟ ଧର୍ମାବଲମ୍ବୀଙ୍କ ଅହେତୁକ କ୍ରୋଧର କାରଣ ହୋଇ ନିଜ ଅଲକ୍ଷ୍ୟରେ ସେ ଶତ୍ରୁ ପାଲଟି ଯାଇଥିଲେ।

ପୁରାତନପନ୍ଥୀ ଧର୍ମାବଲମ୍ବୀମାନେ ନିଜସ୍ୱ ଧର୍ମୀୟ ସଂକୀର୍ଣ୍ଣତା ଭିତରେ ବୁଦ୍ଧଦେବଙ୍କୁ ଗ୍ରହଣ କରିପାରୁ ନ ଥିଲେ; ଗ୍ରହଣକରି ପାରୁ ନ ଥିଲେ ପ୍ରଚାରିକା ବୌଦ୍ଧ ସନ୍ନ୍ୟାସିନୀ ସଂଘମିତ୍ରାଙ୍କୁ। ନିଜ ନିଜ ଭିତରେ ବିଚାରବିମର୍ଶ କରି ସଂଘମିତ୍ରାଙ୍କୁ ହତ୍ୟା କରିବାର ଯୋଜନା ହେଲା।

ଅମାବାସ୍ୟାର ନିବିଡ଼ ଅନ୍ଧକାର। ନଗର, ଜନପଦବାସୀ ଗାଢ଼ନିଦ୍ରାରେ ସୁଷୁପ୍ତ। ଭୟଙ୍କର ନୀରବତାକୁ ଭଙ୍ଗକରି କେବଳ ଶୁଭୁଥାଏ ଝିଲ୍ଲୀ ଝିଙ୍କାରୀର ବୀଣାଜିଣା ଝିଁ ଝିଁ ସୁମଧୁର ଶବ୍ଦ। ନିଶିଗନ୍ଧାର ସୁବାସରେ ଚହଟି ଯାଉଥାଏ ରାଜପଥ। ଧୀର ଅଥଚ ଦୃପ୍ତ ପଦପାତରେ ଯୁବକ ଜଣେ ଆଗେଇ ଚାଲିଥାନ୍ତି ସଂଘମିତ୍ରାଙ୍କ କୁଟୀର ଆଡ଼କୁ। ହାତରେ ଶାଣିତ ଛୁରିକା।

ସଂଘମିତ୍ରାଙ୍କ କୁଟୀର ଯେତିକି ନିକଟତର ହେଉଛି ଯୁବକଟିର ମୁଷ୍ଟି ସେତିକି ପରିମାଣରେ ଦୃଢ଼ ହୋଇ

ଉଠୁଛି । ମୁଖର ପୂର୍ବ କମନୀୟ କାନ୍ତି ଭୟଙ୍କର ରୂପ ଧାରଣ କରୁଥାଏ ସତେ ଯେମିତି । ଅନତିଦୂରରୁ ଯୁବକଟି ଦେଖିପାରିଲା ଏକ କ୍ଷୁଦ୍ର ଦୀପଶିଖାଟିଏ ସହାସ ବଦନରେ ଅନ୍ଧକାରକୁ ବିତାଡ଼ିତ କରିବାରେ ବ୍ୟଗ୍ର ତଥା ଚଳଚଞ୍ଚଳ । ଅନ୍ଧକାର ସହିତ ତାର ବିଦ୍ୱେଷ ନାହିଁ କି ବୈର ନାହିଁ ସତେ ଯେମିତି । କେମିତି ଏକ କିମିଆ ଭାବଧାରାରେ ତା'ର ସ୍ଥାୟିତ୍ୱର ଜାହିର୍ । ସେହି ସାମାନ୍ୟ କ୍ଷୀଣ ଆଲୋକ ଶିଖାରେ ଶୟନରତା ଗାଭୀଟିଏ ନିକଟରେ ସଂଘମିତ୍ରା କିଛି ଗୋଟିଏ କରୁଥିବା ଲକ୍ଷ୍ୟ କଲେ ସେ । ପଶ୍ଚାତ୍‌ଭାଗରୁ ସହଜରେ ଆକ୍ରମଣ କରି ଶତ୍ରୁସଂହାର କରାଯାଇ ପାରିବ । ହସ୍ତ ମୁଷ୍ଟି ବଜ୍ରଭଳି ଟାଣ ହୋଇ ଉଠିଲା । ଛୁରିକାର କୌଣସି ପରିବର୍ତ୍ତନ ନାହିଁ ।

ଆଉ ଟିକିଏ ଆଗେଇ ଗଲେ ଦର୍ପିତ ଯୁବକ ।

ଅତି ନିକଟରୁ ଯୁବକଜଣଙ୍କ ଦେଖିପାରିଲେ କ୍ଷତାକ୍ତ ଗାଭୀଟିର ସେବାରେ ନିମଗ୍ନା ସଂଘମିତ୍ରା । ନିଜେ ପରିଧାନ କରିଥିବା ବସ୍ତ୍ରରୁ ଖଣ୍ଡେ ଖଣ୍ଡେ ଚିରିଗାଭୀ କ୍ଷତକୁ ପୋଛାପୋଛି କରୁଛନ୍ତି ନିବିଷ୍ଟ ଚିତ୍ତରେ । ଅନ୍ୟ କୁଆଡ଼ିକି ନିଘା ନାହିଁ । ରାତ୍ରୀର ବିଜନ ନୀରବତା ପ୍ରତି ସଂକୋଚ ନାହିଁ । ଯୁବକଙ୍କୁ ଲାଗିଲା ସେବା, ମମତା ଓ ପରୋପକାରର ମୂର୍ତ୍ତିମନ୍ତ ପ୍ରତୀକଟିଏ । ବଜ୍ରମୁଷ୍ଟି କ୍ରମେ ଶିଥିଳ ହୋଇ ଆସିଲା । ହସ୍ତରୁ ଆପଣାଛାଏଁ ଖସି ପଡ଼ିଲା ତୀକ୍ଷ୍ଣ ଛୁରୀକା । ତରଳିଗଲା ହତ୍ୟାକାରୀର ପାଷାଣ ହୃଦୟ ।

କୋଟିନିଧି ପାଇଲା ଭଳି ଦୌଡ଼ିଯାଇ ସଂଘମିତ୍ରାଙ୍କ ପାଦଦୁଇଟିକୁ ଜାବୁଡ଼ି ଧରିଲେ । ଅନୁତାପର ଅଶ୍ରୁରେ ପାଦଯୁଗଳ ପ୍ରକ୍ଷାଳନ କଲେ । ସମସ୍ତ ବୃତ୍ତାନ୍ତ ଗୋଟି ଗୋଟି କରି ତାଙ୍କ ନିକଟରେ ଉପସ୍ଥାପନ କରି କ୍ଷମାପ୍ରାର୍ଥନା କଲେ । ମାତ୍ର ସଂଘମିତ୍ରା ସାମାନ୍ୟ ଟିକିଏ ବିଚଳିତ ନ ହୋଇ ଗାଇ ଉଠିଲେ ସଂଘମନ୍ତ୍ର । ଧୀରେ ଧୀରେ ଯୁବକଜଣଙ୍କ ଗାଇଲେ, "ବୁଦ୍ଧ ଶରଣଂ ଗଚ୍ଛାମି ।"

*ଶିଳାପଦ୍ମ, ବାଲାଜୀପେଣ୍ଠ ସାହି, ବ୍ରହ୍ମପୁର- ୭୬୦୦୦୨, ଗଞ୍ଜାମ*



## ମନ୍ ଉନା କର୍‌ନାଇଁ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ଛୋଟ୍ ବଲି କେଭେ
ମନ୍ ଉନା କର୍ ନାଇଁ ।
ରୋଟ୍ କାମ୍ କର୍
ଦୁନିଆଁ ରହେବା ଚାହିଁ ।
ଛୋଟ୍ ଚାଁଟି କେଭେ
କାମେ ନାଇଁ ମାନେ ହାର୍ ।
ବୁହିନେସି ସବୁ
ଯେତ୍‌କି ହେଲେ ବି ଭାର୍ ।
ଛୋଟ୍ ବୀଜା ଠାନୁ
ଜନମ ହେସି ବର୍‌ଗଛ୍ ।
ହଟି ନାଇଁ ଯିବ
ଭାବି ଭାବି ଆଗ୍‌ପଛ୍ ।

*ଭାରତୀ କୁଟୀର,*
*ଡୁଙ୍ଗୁରୀପାଲି- ୭୬୭୦୨୩, ସୋନପୁର*

# ମହାରାଜାଙ୍କ ଉଦାରତା

ସୁଶ୍ରୀ ସୋଫିଆ ମହାନ୍ତି
(ଅଷ୍ଟମ ଶ୍ରେଣୀ ଛାତ୍ରୀ)

ବହୁତ ଦିନ ତଳର କଥା। ଆଜିକାଲିକା ଭଳି କଥା ନୁହେଁ। ଲୋକଙ୍କ ପଇସାପତ୍ରର ସୁବିଧା ଅସୁବିଧାରେ ସାହାଯ୍ୟ କରିବା ନିମନ୍ତେ ବର୍ତ୍ତମାନ ବ୍ୟାଙ୍କ ସବୁ ରହିଛି। ସେତେବେଳର କଥା ନିଆରା। ଲୋକେ ନିଜ ସୁବିଧା ଅସୁବିଧା ବେଳେ ମହାଜନଙ୍କ ଉପରେ ନିର୍ଭର କରୁଥିଲେ। ମହାଜନମାନେ ଲୋକଙ୍କଠାରୁ ଘରବାଡ଼ି, ଜମିଜୁମା, ସୁନାରୂପା ଆଦି ବନ୍ଧକ ରଖି ଧାରଉଧାର ଦେଉଥିଲେ। ସୁଧ ସହ ମୂଳ ପଇଠ ହେଲେ ନିଜ ଜିନିଷ ଫେରିପାଉଥିଲେ। କେହି ଋଣ ପରିଶୋଧ କରି ନ ପାରିଲେ ବନ୍ଧକ ଜିନିଷ ସବୁ ମହାଜନଙ୍କର ହୋଇଯାଉଥିଲା। ଆଉ କେତେକ ମହାଜନ ମଧ୍ୟ ବିନା ବନ୍ଧକରେ ଋଣଗ୍ରହୀତା (ଖାତକ) ଠାରୁ ଲେଖେଇ ନେଇ ଋଣ ଦେଇଥାନ୍ତି।

ଗୋଟିଏ ରାଜ୍ୟରେ ଜଣେ ମହାଜନ ଥାଆନ୍ତି।



ତାଙ୍କ ନାଁ ସାଧୁ ମହାଜନ। ବାପ ଗୋସାଁବାପ ଅମଳରୁ ତାଙ୍କର ମହାଜନୀ କାରବାର। ଅମାପ ଧନସମ୍ପତ୍ତିର ମାଲିକ ସେ। ତଥାପି ତାଙ୍କ ମନରେ ଟିକିଏ ବୋଲି ଗର୍ବ କି ଅହଙ୍କାର ନ ଥାଏ। ତାଙ୍କ ନାମ ସାଥିରେ କାମଦାମ, ମନହୃଦୟ ସବୁ କିଛି ଏକାକାର। ସଭିଁଏ ମହାଜନଙ୍କୁ ଧନ୍ୟ ଧନ୍ୟ କହନ୍ତି।

ସବୁ ଦିନ ସମାନ ଯାଏ ନାହିଁ। ଜୀବନ ବହୁ ଉଠାଣି ଗଡ଼ାଣି ବାଟ ଦେଇ ଗତି କରେ। ଏମିତି ଦିନେ ସାଧୁ ମହାଜନଙ୍କ ଜୀବନ ଗତି ଗଡ଼ାଣି ମୋଡ଼ ନେଲା। ମହାଜନଙ୍କ ସାଧୁ ସ୍ୱଭାବ ଦେଖି ଖାତକମାନେ ଋଣ ପରିଶୋଧ କଲେ ନାହିଁ। ଧୀରେ ଧୀରେ ଶେଷକୁ ଘରର ମୂଲ୍ୟବାନ ପଦାର୍ଥ ସବୁ ମଧ୍ୟ ବିକ୍ରି ହେଲା। ତଥାପି ସେ କୌଣସି ଖାତକକୁ ମୁହଁ ଖୋଲି ଋଣ ପରିଶୋଧ ପାଇଁ ପଦୁଟିଏ ବି କହିଲେ ନାହିଁ।

ଦିନେ ମହାଜନ କ'ଣ ଭାବିଲେ କେଜାଣି, ନିଜ ପୁଅକୁ ଡାକି ବୈଠକ ଘରେ ଥିବା ଆଲମିରାରୁ ବିଡ଼ା ବିଡ଼ା କାଗଜ ସବୁ ବାହାର କରି ସେଗୁଡ଼ିକୁ ଚିରି ନଷ୍ଟ କରିବାକୁ ଲାଗିଲେ। ମହାନଙ୍କ ପୁଅ ବାପାଙ୍କ କଥାକୁ ସମ୍ମାନ ଜଣାଇ ସେଇ କାମରେ ଯୋଗ ଦେଲେ। ଏତିକିବେଳେ ମହାଜନଙ୍କର ଜଣେ ବନ୍ଧୁ ଆସି ସେଠାରେ ପହଞ୍ଚିଲେ।

ଆସିଥିବା ବନ୍ଧୁଜଣଙ୍କ ଅନ୍ୟ କେହି ନୁହେଁ; ସେ ଦେଶ ରାଜାଙ୍କ ମନ୍ତ୍ରୀ। ମନ୍ତ୍ରୀ ବାପପୁଅଙ୍କ କାମ ଦେଖିଲେ। ଉତ୍ସୁକତାବଶତଃ ସେଥିରୁ ଖଣ୍ଡିଏ କାଗଜ ଉଠାଇ ଦେଖିଲେ ଯେ ସେଗୁଡ଼ାକ କିଛି ଆଜେବାଜେ କାଗଜ ନୁହେଁ, ଖାତକ ଋଣ ନେଇ ଲେଖି ଦେଇଥିବା ରସିଦ୍। ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇଗଲେ। ମହାଜନଙ୍କୁ ଏପରି କରିବାର କାରଣ ପଚାରିଲେ।

ମହାଜନ କିଛି କହିବା ପୂର୍ବରୁ ମହାଜନଙ୍କ ପୁଅ କହିଲା-- ମଉସା ! ବାପା ପୂର୍ବରୁ ଋଣ ଦେଲାବେଳେ ଖାତକକୁ ସୁବିଧା ଦେଖି ସୁଝିବା ପାଇଁ କହୁଥିଲେ। ଅସୁବିଧା ସ୍ଥଳେ ଆଦୌ ଏଥିପାଇଁ ବ୍ୟସ୍ତ ନ ହେବାକୁ ବି ପରାମର୍ଶ ଦେଉଥିଲା। ବାପାଙ୍କ ସରଳ ପ୍ରକୃତି ଓ ସାଧୁପଣିଆ ଦେଖି ଖାତକମାନେ ଠକି ଚାଲିଲେ। ବାପା ଏକଥା ଜାଣି ମଧ୍ୟ କାହାକୁ ପଦୁଟିଏ କହିଲେ ନାହିଁ।

--ରସିଦଗୁଡ଼ିକ ନଷ୍ଟ କରିବାର କାରଣ କ'ଣ? କେତେବେଳେ ବି ତ କାମରେ ଲାଗନ୍ତା !

--''ବାପା ସେକଥା ଚାହାନ୍ତିନି। ନିଜର ଏ ଦୁର୍ଦ୍ଦିନରେ ରସିଦଗୁଡ଼ିକ ଦେଖି କାଳେ କାହାକୁ କିଛି ମାଗିଦେବେ ଆଉ ପୂର୍ବରୁ ଦେଇଥିବା କଥା ଭାଙ୍ଗିଯିବ- ସେଇ ଆଶଙ୍କାରେ ସେଗୁଡ଼ିକ ନଷ୍ଟ କରି ଦେଇଛନ୍ତି।''

--କିରେ ବାପ ! ତୁ ମଧ୍ୟ କେଡ଼େ ମୂର୍ଖଟାଏ କିରେ ? ସେ ସିନା ଗୋଟେ ଖିଆଲରେ ପାଗଳାମି କରୁଛନ୍ତି। ତୋ' ମୁଣ୍ଡରେ କ'ଣ କିଛି ବୁଦ୍ଧିଶୁଦ୍ଧି ନାହିଁ। ତୋ' ନିଜ ଭବିଷ୍ୟତ କଥା ଟିକେ ଚିନ୍ତା କରନ୍ତୁ ଭଲା !''

--ମଉସା ! ମୋ ଭବିଷ୍ୟତ ପାଇଁ ମୋର ଆଦୌ ଚିନ୍ତା ନାହିଁ। ବାପା ମୋତେ ଭଲ ଗୁରୁଙ୍କଠାରୁ ଉତ୍ତମ ଶିକ୍ଷା ଦିଆଇଛନ୍ତି। ସେଇ ଶିକ୍ଷାକୁ ନେଇ ବଞ୍ଚିବା ଆରମ୍ଭ କରିବି। ତେଣିକି ମୋ ଭାଗ୍ୟରେ ଯାହା ଥିବ। ମୋର ଏତିକି ଟିକିଏ ସ୍ୱାର୍ଥ ପାଇଁ ବାପାଙ୍କ ବିରୋଧାଚରଣ କରିବା ମୋର ମୋର ଉଚିତ ହେବନାହିଁ।

--ମହାଜନ ଦୁହିଙ୍କ କଥା କେବଳ ନୀରବରେ ଶୁଣୁଥିଲେ। ତାଙ୍କ ମୁହଁରେ ହସ ଧାରେ ଉକୁଟି ଆସୁଥିଲା। ମନ୍ତ୍ରୀ ଥରେ ମହାଜନଙ୍କୁ, ଆଉଥରେ ମହାଜନଙ୍କ ପୁଅକୁ ଚାହିଁଲେ। ବାପା ପୁଅଙ୍କର ଏ ମହାନ୍ ଉଦାରତା ଓ ମହତପଣିଆ ଆଗରେ ତାଙ୍କ ମୁଣ୍ଡ ଆପେ ନଇଁଗଲା। ସେଠୁ ସେ ଏକମୁହାଁ ରାଜଦରବାରକୁ ମୁହାଁଇଲେ।

ଏତେ ମହତ୍ ଲୋକ କି କେବେ ଅସୁବିଧାରେ ପଡ଼ିପାରେ ! ରାଜାଙ୍କ କାନକୁ ଏକଥା ଗଲା। ରାଜାଙ୍କ ଆଦେଶରେ ଚାରମାନେ ଠକ-ଖାତକଙ୍କଠାରୁ ଋଣ ଆଦାୟ କଲେ। ପ୍ରକୃତରେ ଅସୁବିଧାରେ ପଡ଼ିଥିବା ଖାତକଙ୍କୁ ସବୁ ଛାଡ଼ କରିଦିଆଗଲା। ମହାଜନଙ୍କର ପୁଣିଥରେ ମହାଜନୀ କାରବାର ଆରମ୍ଭ ହେଲା।

ଏଥର କିନ୍ତୁ ମନ୍ତ୍ରୀଙ୍କ ପରାମର୍ଶ କ୍ରମେ ସାଧୁ ମହାଜନ ମହାଜନୀ କାରବାରରୁ ଅବସର ନେଇ ନିଜ ପୁଅକୁ ସମସ୍ତ ଦାୟିତ୍ୱ ଅର୍ପଣ କଲେ।

*ସରସ୍ୱତୀ ଶିଶୁ ମନ୍ଦିର, ହିଞ୍ଜିଳିକାଟୁ (ଗଞ୍ଜାମ)*



## ଧନ୍ଦା

ଶ୍ରୀ ରାମଚନ୍ଦ୍ର ସାହୁ

ସହଜ ଭାବିବ ମୋ ଧନ୍ଦା ଜାଣ
ଚାରୋଟି ଅବନା ଅକ୍ଷର ଆଣ ।
ପ୍ରଥମ ସହିତ ଦ୍ୱିତୀୟ ଭଣ
ଦ୍ୱିଅଙ୍କ ସଂଖ୍ୟାଟି ହୋଇବ ଜାଣ ।
ଦ୍ୱିତୀୟ ତୃତୀୟ ଅକ୍ଷର ଯୋଡ଼
ଅସ୍ତ୍ରଟିଏ ହେଲା ସଭିଏଁ ପଢ଼ ।
ତୃତୀୟ ଚତୁର୍ଥ ଅବନାକ୍ଷର
ହୋଇଯିବ ଏକ ନାମ ଯାନର ।
କହିବ ଯଦି ଏ ଧନ୍ଦା ଉତ୍ତର
ପାଇବ ନିଶ୍ଚୟ ମୋ ପୁରସ୍କାର ।

(ଉତ୍ତର ୧୨ ପୃଷ୍ଠାରେ)

*ତେନ୍ତୁଳିନଣ୍ଡା, ଡିମ୍ବୋ, କେନ୍ଦୁଝର- ୭୫୮୦୧୪*



# ମା'ଙ୍କୁ କରିବା ପୂଜା

ଶ୍ରୀ ଜଗନ୍ନାଥ ପଣ୍ଡା

ଶରତ ଦେଇଛି ଚଉଦିଗେ ଭରି
ଶାରଦୀୟ ଶୋଭାରାଶି
ପଲ୍ଲୀ ନଗରରୁ କ୍ଷେତ ପ୍ରାନ୍ତର ବି
ସବୁ ଉଠିଲେଣି ହସି ।
ସଜାଇ ଦେଇଛି ପ୍ରକୃତି ସତରେ
ମା'ଙ୍କ ଆସିବା ପଥ
ମରତ ଭୂଇଁରେ ବିଜେ ହେବେ ଆସି
ସାରା ଜଗତର ମାତ ।
ଭକତି ଭାବରେ ସବୁରି ପରାଣ
ପୂରି ଉଠିଲାଣି ଆଜି
ସକାଳେ ସଞ୍ଜରେ ପ୍ରତିଧ୍ୱନି ହୁଏ
ମା'ଙ୍କ ବନ୍ଦନାରାଜି ।
ପୋଛି ହୋଇଯିବ ସବୁରି ମନରୁ
ଗରବ ଦମ୍ଭରେ ଯେତେ
କମର କଷିବେ ପ୍ରତିଟି ମଣିଷ
ମଣିଷ ଜାତିର ହିତେ ।
ମା'ଙ୍କ ଆଶିଷେ ଏ ମାଟିରୁ ପରା
ଦୁଃଖରାତି ପାହିଯିବ
ସବୁରି ମନରେ ଚେଇଁ ଉଠିବରେ
ମଣିଷପଣିଆ ଭାବ ।
ଆସ ଆସ ମୋର ଭାଇଭଉଣୀଏ
ମା'ଙ୍କୁ କରିବା ପୂଜା
ତାଙ୍କରି ଆଶିଷେ ଉଡ଼ାଇବା ଆମେ
ଏ ମାଟିର ଜୟଧ୍ୱଜା ।

*ସରପଦା, ଭଣ୍ଡାରି ପୋଖରୀ, ଭଦ୍ରକ*

---



ଜଙ୍ଗଲରେ ପଶୁରାଜ ସିଂହର ବିବାହ ଉତ୍ସବ ଅନୁଷ୍ଠିତ ହେଉଥିଲା । ବହୁ ଅତିଥିଙ୍କ ମେଳରେ ବଣର ମୂଷା ମଧ୍ୟ ସେଠାରେ ପହଞ୍ଚିଲା । ସେ ଅତି ଆନନ୍ଦରେ ପାଟି କରି କହିଲା, "ଭାଇ ! ଆଜି ପରି ଶୁଭଦିନରେ ମୁଁ ଆପଣଙ୍କର ସର୍ବମଙ୍ଗଳ କାମନା କରୁଛି ।"

ସେତିକିବେଳେ ସିଂହ ପରିବାରର ଅନ୍ୟ ଗୋଟିଏ ସିଂହ ମୂଷାକୁ ରାଗରେ ଧରି ପକାଇ କହିଲା, "ତୁ ନିଜକୁ କ'ଣ ଭାବୁଛୁ କି ? ତୋର ତ ଭାରି ସାହସ ! ସିଂହ ତୋର କେମିତି ଭାଇ ହେଲା ?"

ମୂଷା କହିଲା, "କ୍ଷମା କରିବେ, ମୁଁ ପ୍ରଥମେ ସିଂହ ଥିଲି, ବିବାହ ପରେ ମୋର ଏ ଅବସ୍ଥା ।"



# ବାମନ ଗ୍ରହ ମେକେମେକ୍

ଶ୍ରୀ ହିମାଂଶୁ ଶେଖର ଫତେସିଂହ

ସୌରଜଗତର ପାଞ୍ଚଟି ବାମନ ଗ୍ରହ ମଧ୍ୟରୁ 'ମେକେମେକ୍' ଗୋଟିଏ । ଏହା ହେଉଛି ସୌରଜଗତର ତୃତୀୟ ବୃହତ୍ତମ ବାମନ ଗ୍ରହ । ଏରିସ୍ ଓ ପ୍ଲୁଟୋ ବାମନ ଗ୍ରହ ପରେ ଏହାର ସ୍ଥାନ । ଏରିସ୍ ପରେ ଏ ହେଉଛି ସୌରଜଗତର ଦୂରତମ ପିଣ୍ଡ । ପ୍ରଥମେ ୨୦୦୫ ମସିହା ମାର୍ଚ୍ଚ ୩୧ ତାରିଖ ଦିନ ଆମେରିକାର ମାଉଣ୍ଟ ପୋଲମାର ମାନ ମନ୍ଦିରରେ ମାଇକେଲ୍ ବ୍ରାଉନ୍ ଓ ତାଙ୍କର ସହକର୍ମୀମାନେ ମିଶି ଏହା ଆବିଷ୍କାର କରିଥିଲେ । ସେମାନେ ସେହି ବର୍ଷ ଜୁଲାଇ ୨୯ ତାରିଖ ଦିନ ସର୍ବସାଧାରଣରେ ଆବିଷ୍କାର ସମ୍ପର୍କରେ ଘୋଷଣା କରିଥିଲେ । ଏହିଦିନ ମଧ୍ୟ ଏରିସ୍‌ର ଆବିଷ୍କାର ସମ୍ପର୍କରେ ଘୋଷଣା କରାଯାଇଥିଲା । ଆବିଷ୍କାର ପରେ ଏହାର ଅସ୍ଥାୟୀ ନାଁ 2005 $FY_9$ ରଖା ଯାଇଥିଲା । ପରେ ୨୦୦୮ ମସିହା ଜୁଲାଇ ମାସ ୧୧ ତାରିଖରେ ଆନ୍ତର୍ଜାତୀୟ ଜ୍ୟୋତିର୍ବିଜ୍ଞାନୀ ସଂଘ ଦ୍ୱାରା ଏହାକୁ ଏକ ବାମନ ଗ୍ରହ ରୂପେ ଘୋଷଣା କରାଯାଇଥିଲା । ଇଷ୍ଟର ଦ୍ୱୀପର ମନୁଷ୍ୟ ଜାତିର ସୃଷ୍ଟିକର୍ତ୍ତାଙ୍କ ନାମ ଅନୁସାରେ ଏହାର ନାମ ମେକେମେକ୍ ରଖାଯାଇଥିଲା । କ୍ଷୁଦ୍ର ଗ୍ରହ ତରଫରୁ ଏହାର ସଂଖ୍ୟା ରହିଛି ୧୩୬୪୭୨ ।



ମେକେମେକ୍ ହେଉଛି ଏକ କୁଇପର ବଳୟ ବସ୍ତୁ । ହର୍ଷ୍ଟଲେ ମହାକାଶ ଟେଲିସ୍କୋପ ଆକାରର ଟେଲିସ୍କୋପ ଯୋଗେ ଏହା ସମ୍ପର୍କରେ ତଥ୍ୟ ହାସଲ କରାଯାଇପାରିଛି । ଏହା ଏକ ବର୍ତ୍ତୁଳାକାର ପିଣ୍ଡ । ଏହାର ବ୍ୟାସ ୧୩୬୦ରୁ ୧୪୮୦ କି.ମି. । ଆକାରରେ ଏହା ପ୍ଲୁଟୋର ପ୍ରାୟ ଦୁଇ ତୃତୀୟାଂଶ । ଏହା ମଧ୍ୟ ତୃତୀୟ ବୃହତ୍ତମ ପର-ନେପଚ୍ୟୁନୀୟ ବସ୍ତୁ । ଏହାର ମାଧ୍ୟାକର୍ଷଣ ଶକ୍ତି ଅଧିକ ହୋଇଥିବାରୁ ଏହା ବର୍ତ୍ତୁଳାକାର ହୋଇପାରିଛି । ସୂର୍ଯ୍ୟକୁ ଏହା ଏକ ଦୀର୍ଘ ବୃତ୍ତାକାର କକ୍ଷ ପଥରେ ପରିକ୍ରମା କରିଥାଏ । ନିକଟାବସ୍ଥାନରେ ସୂର୍ଯ୍ୟଠାରୁ ଏହାର ଦୂରତା ୩୮.୫ ଓ ଦୂରାବସ୍ଥାନ କାଳରେ ସୂର୍ଯ୍ୟଠାରୁ ଏହାର ଦୂରତା ୫୩ ଜ୍ୟୋତିଃ ଏକକ ରହେ । ସୂର୍ଯ୍ୟଠାରୁ ଏହାର ହାରାହାରି ଦୂରତା ହେଉଛି ପ୍ରାୟ ୪୬ ଜ୍ୟୋତିଃ ଏକକ । ସୂର୍ଯ୍ୟର ଚତୁଃପାର୍ଶ୍ୱରେ ଏହା ଥରଟିଏ ପରିକ୍ରମା କରିବା ପାଇଁ ୩୧୦ ବର୍ଷ ଲାଗିଥାଏ । ପରିକ୍ରମା କାଳରେ ଏହାର ବେଗ ରହେ ସେକେଣ୍ଡ ପ୍ରତି ୪.୪ କିଲୋମିଟର । ଏହାର



କକ୍ଷତଳ କ୍ରାନ୍ତି ବୃତ୍ତ ସହିତ ୨୯° କୋଣରେ ରହିଥାଏ । ଏହାର ଆବର୍ତ୍ତନ କାଳ ହେଉଛି ମାତ୍ର ୮ ଘଣ୍ଟା । ଏହାର ପୃଷ୍ଠଭାଗର ତାପମାତ୍ରା ହେଉଛି ୨୪୩° ସେ । ଏହାର କୌଣସି ଉପଗ୍ରହ ନାହିଁ । ତେଣୁ ଏହାର ନିର୍ଭୁଲ ବସ୍ତୁତ୍ୱ ନିରୂପଣ କରିବା ସମ୍ଭବପର ନୁହେଁ ।

ବର୍ଣ୍ଣାଳି ବିଶ୍ଳେଷଣରୁ ଜଣାଯାଏ ଯେ ଏହାର ପୃଷ୍ଠଭାଗ ମିଥେନ୍, ଯବକ୍ଷାରଜାନର ବରଫକୁ ନେଇ ଗଠିତ । ଏଥିରେ ମିଥେନ୍‌ର ବରଫ ପଗଡ଼ ରୂପରେ ରହିଥାଏ । ପ୍ରତି ପଗଡ଼ର ଆକାର ପ୍ରାୟ ୧ ସେ.ମି. ରହେ । ସୂର୍ଯ୍ୟକିରଣରେ ଫଟୋଲିସିସ୍ ପ୍ରକ୍ରିୟା ଫଳରେ ମିଥେନ୍‌ରୁ ଇଥେନ୍, ଥୋଲିନ୍ ସୃଷ୍ଟି ହେଉଥିବାର ଜଣା ପଡ଼ିଛି । ସ୍ପାଇଜର ଟେଲିସ୍କୋପ୍‌ର ତଥ୍ୟରୁ ଜଣାଯାଏ ଯେ ଏହାର ପୃଷ୍ଠ ସମାଙ୍ଗୀ ନୁହେଁ । ଏହାର ମଝିରେ ମଝିରେ ଅନ୍ଧାରିଆ ଭୂଭାଗ ଦେଖିବାକୁ ମିଳେ । ଏହାର ପୃଷ୍ଠରେ ଯେତେ ସୂର୍ଯ୍ୟାଲୋକ ପଡ଼େ, ତାହାର ୮୦ ଭାଗ ପ୍ରତିଫଳିତ ହୋଇଯାଏ । ଏହାର ସାନ୍ଦ୍ରତା ହେଉଛି ମାତ୍ର ଜଳର ଦୁଇଗୁଣ ସହ ସମାନ । ଏହାର ମାଧ୍ୟାକର୍ଷଣ ଶକ୍ତି ଅତି କ୍ଷୀଣ । ତେଣୁ ତାହା ବାୟୁମଣ୍ଡଳକୁ ରଖି ପାରେନାହିଁ । ଏହାର ପୃଷ୍ଠରୁ ଯବକ୍ଷାରଜାନ ଗ୍ୟାସ୍ ଓ ମିଥେନ୍ ଗ୍ୟାସ୍ ବାହାରୁଥାଏ; ମାତ୍ର ଯବକ୍ଷାରଯାନ ଶୂନ୍ୟକୁ ଚାଲିଯାଏ । ମିଥେନ୍‌ର ଅଳ୍ପ କିଛି କଣିକା ଏହା ଚାରିପଟେ ଭାସି ବୁଲୁଥାଏ ।

*ଅଭ୍ୟର୍ଥନା, ଇବ୍ ଥର୍ମାଲ, ଝାରସୁଗୁଡ଼ା- ୭୬୮୨୩୪*

> **ତୁମେ ଯେଉଁଠାକୁ ବାହାରିଛ, ସେଠାକୁ ଯିବା ରାସ୍ତା ଯଦି ଚମତ୍କାର, ତେବେ ଲକ୍ଷ୍ୟସ୍ଥଳ ବିଷୟରେ ଚିନ୍ତା କର । କିନ୍ତୁ ଯଦି ଲକ୍ଷ୍ୟସ୍ଥଳ ଅତି ସୁନ୍ଦର, ତେବେ ଆଉ ରାସ୍ତା ବିଷୟରେ ଚିନ୍ତା କରନା ।**



## The Indians

The Straits Settlements were governed from India, first by the British East India Company, then the Indian colonial government, up to 1867 – a relationship which encouraged Indian emigration to Singapore. A contingent of Indian soldiers was in fact part of Raffles' party when he first arrived on the island. Most early immigrants were Tamils from South India who were known popularly as 'Chulia' (a reference to Tamil Indian Muslims from the Coromandel coast, site of the ancient kingdom of Chola) or 'Klings' (said to be from the ancient Indian kingdom of Kalinga, now Orissa; a general Malay term for Tamil Indians) They settled around 'Chulia Kampong' – now Market and Chulia Streets on the south bank of the River – which

ସିଙ୍ଗାପୁରରେ 'ଷ୍ଟ୍ରେଟ୍‌ସ୍' ରାଜିନାମା ପ୍ରଥମେ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପରେ ଏହା ଭାରତର ଉପନିବେଶବାଦୀ ସରକାରଙ୍କ ଦ୍ୱାରା ନିୟନ୍ତ୍ରିତ ହେଲା । ଏହାଦ୍ୱାରା ଭାରତୀୟମାନେ ଅତିଷ୍ଠ ହୋଇ କ୍ରମେ ସିଙ୍ଗାପୁରରେ ବସବାସ କରିବା ଆରମ୍ଭ କଲେ । ସବୁଠାରୁ ପ୍ରଥମେ ଯାଇଥିବା ଦଳ ତାମିଲ ଥିଲେ । ସେମାନେ ହେଲେ ଦକ୍ଷିଣ ଭାରତର ଚୋଳ ରାଜ୍ୟର ତାମିଲ ଭାରତୀୟ ମୁସଲମାନ । ସେମାନଙ୍କୁ ଲୋକେ 'ଚୁଳିଆ' କିମ୍ବା କ୍ଲିଙ୍ଗ୍ (କଳିଙ୍ଗର ଲୋକ--ବର୍ତ୍ତମାନର ଓଡ଼ିଆ । ଏହା ଏକ ମାଳୟ ଶବ୍ଦ, ଯାହା ତାମିଲ୍ ମୁସଲମାନଙ୍କ ପାଇଁ ବ୍ୟବହୃତ ହୁଏ) ବୋଲି ନାଁ ଦେଇଥିଲେ । ସେମାନେ ଚୁଳିଆ କମ୍‌ପଙ୍ଗ୍‌ରେ ପ୍ରଥମେ ବସବାସ କଲେ । ବର୍ତ୍ତମାନ ମଧ୍ୟ ସେମାନେ ସିଂଗାପୁର ଦକ୍ଷିଣ ବଜାର ପାଖରେ ଓ ଚୁଳିଆ ରାସ୍ତା ପାଖରେ ରହୁଛନ୍ତି ।

ସିଙ୍ଗାପୁର ପରିଭ୍ରମଣ ସମୟରେ ଉପରୋକ୍ତ ଫଟୋଚିତ୍ରଟିକୁ ସେଠାକାର ସଂଗ୍ରହାଳୟରେ ଦେଖିବାର ସୁଯୋଗ ମିଳିଥିଲା । ସେଠାରେ ପ୍ରଦର୍ଶିତ ହୋଇଥିବା ଅନେକ ତଥ୍ୟ ମଧ୍ୟରୁ କଳିଙ୍ଗ ନାମ ବହନ କରୁଥିବା ଏଇ ତଥ୍ୟଟି ମୋ ଆଖିରେ ପଡ଼ିଥିଲା । ଏଇଥିରୁ ଜଣାପଡ଼େ ଯେ ସେ ସମୟରେ ମଧ୍ୟ ଭାରତ ବାହାରେ 'କଳିଙ୍ଗ' ବା ଆମ ଓଡ଼ିଶାର ଐତିହ୍ୟ କିଛି କମ୍ ନ ଥିଲା ।

--**ଶ୍ରୀ ନାରାୟଣ ଚନ୍ଦ୍ର ନନ୍ଦ,** ଝୋଲାସାହି, କଟକ

# ବାଇଚଢ଼େଇର କଥା

ଶ୍ରୀ ବଶିଷ୍ଠ ଚରଣ ସ୍ୱାଇଁ

ଡଉଲଡାଉଲ ଝିଅଟି । ନାଁ କବିତା । ଦିନେ ସକାଳେ ତା ମାଆ କହିଲା, "କବିତାଲୋ, ବାରିଅଗଣାରେ ଉଷୁନା ଧାନ ହେଁସେ ଶୁଖୁଛି । ଚଢ଼େଇ ଖାଇଦେବେ । ବାଡ଼ି ଖଣ୍ଡେ ଧରି ଜଗିଥା । ଗାଁ ମୁଣ୍ଡ ପୋଖରୀକୁ ମୁଁ ଗାଧୋଇ ଯାଉଛି ।" କବିତା ବାଡ଼ିଖଣ୍ଡେ ଧରି ଧାନ ହେଂସ ପାଖରେ ବସିଲା । ଏଇ ସମୟରେ ପଲେ ଘରଚଟିଆ ଓ ବାଇଚଢ଼େଇ ଉଡ଼ି ଆସି ଧାନ ହେଂସରେ ବସିଗଲେ । କୁନି କୁନି ଚଢ଼େଇଙ୍କୁ ଦେଖି କବିତା ଭୋଳ । ଖପ୍‌ଖାପ୍ ଡେଉଁଛନ୍ତି । ଟିକି ଟିକି ଥଣ୍ଟରେ ଧାନ ଖାଉଛନ୍ତି । ଚେଁ ଚାଁ ହେଉଛନ୍ତି । ମାଆ ଚଢ଼େଇମାନେ ଥଣ୍ଟରେ ଆଧାର ନେଇ ଛୁଆମାନଙ୍କୁ ଖୁଆଉଛନ୍ତି । ଦେହରେ ବାଇଚଢ଼େଇମାନେ ହଳଦୀ ମାଖିଛନ୍ତି । ଧଳା, କଳା, ନାଲିରଙ୍ଗର ଘରଚଟିଆମାନେ ନିଜ ଦେହକୁ ରଙ୍ଗେଇଛନ୍ତି । ଖୁବ୍ ସୁନ୍ଦର ସେମାନେ ଦିଶୁଛନ୍ତି । ବାଡ଼ି ଟେକି ସେମାନଙ୍କୁ ତଡ଼ିଦେବା ପାଇଁ କବିତାର ମୋଟେ ଇଚ୍ଛା ହେଲାନି । ବରଂ ସେ ଓଲଟା କହିଲା--

କୁନି ଚଢ଼େଇରେ, କୁନିଚଢ଼େଇ
ବୋଉ ଯାଇଅଛି ଏବେ ଗାଧୋଇ
ଭୋକ ଲାଗୁଥିବ ତୁମକୁ ଭାରି
ଖାଇଦିଅ ଧାନ ପେଟକୁ ଭରି
ଆସିଲେ ବୋଉ, ମାରିବି ଶୁସୁରି
ଉଡ଼ି ପଳେଇବ ହେଳା ନ କରି ।

ଗୀତଟି ଶୁଣି ଚଢ଼େଇମାନେ ନିର୍ଭୟରେ ଚେଁଚାଁ ହୋଇ ଧାନ ଖାଇବାକୁ ଲାଗିଲେ । କିନ୍ତୁ ସେଦିନ ତା ବୋଉ ସଅଳ ଫେରିଆସିଲା । ଏଣେ କବିତାର ତ କବି ଆଖି ଦୁଇଟି ଚଢ଼େଇଙ୍କର ଅପରୂପ ସୌନ୍ଦର୍ଯ୍ୟରେ ମଜ୍ଜି ଯାଇଛି । ତେଣୁ ତା ବୋଉ ଆସିବା ଦେଖିପାରିଲାନି କି ଶୁସୁରି ମାରି ପାରିଲାନି । ପଲେ ଚଢ଼େଇ ଧାନ ଖାଉଥିବା ଦେଖି ତା ବୋଉ ମୁଣ୍ଡକୁ ବିଷ ଚଢ଼ିଗଲା । ଗୋଟିଏ ଟେକା ଧରି ସେ ଚଢ଼େଇଙ୍କୁ ଫୋପାଡ଼ିଦେଲା । ସବୁ ଚଢ଼େଇ ଉଡ଼ିଯାଇ ଚାଳ ଉପରେ ବସିଗଲେ । ମାତ୍ର ଟେକାଟା ଗୋଟିଏ ବାଇଚଢ଼େଇ ଦେହରେ ବାଜିଗଲା । ତା'ର ଦୁଇଟିଯାକ ଗୋଡ଼ ଭାଙ୍ଗିଗଲା । ସେ ଉଡ଼ି ପାରିଲା ନାହିଁ କି ଠିଆ ହେଇ ପାରିଲା ନାହିଁ । ଏହା ଦେଖି କବିତାର ମନ ଭାରି ଦୁଃଖ ହେଲା । ସହସା ଯାଇ ବାଇ-ଚଢ଼େଇଟିକୁ ସେ ତଳୁ ଉଠେଇ ଆଣିଲା । ବାଇଚଢ଼େଇର ଆକୁଳତା ଦେଖି କବିତା ଆଖିରୁ ଲୁହ ଗଡ଼ିଲା । ତାକୁ ଆଶ୍ୱାସନା ଦେଇ କହିଲା, "ବାଇଚଢ଼େଇରେ, ତୁ ମୋଟେ ମନ ଦୁଃଖ କରନି । ମୋର ଏଇ ବାଆଁ ହାତ ଥରେ ଭାଙ୍ଗି ଯାଇଥିଲା ।



ହାତରେ ମଲମ ଲଗେଇ ଡାକ୍ତରବାବୁ ବ୍ୟାଣ୍ଡେଜ କରିଦେଲେ। ପନ୍ଦରଟା ଦିନରେ ହାତ ଠିକ୍ ହେଇଗଲା। ତୋ ଗୋଡ଼ରେ ମଲମ ଲଗେଇ ମୁଁ ସେଇପରି ବ୍ୟାଣ୍ଡେଜ କରିଦେଉଛି। ଦେଖିବୁ, ପନ୍ଦଦିନରେ ତୋ ଗୋଡ଼ ବି ଠିକ୍ ହେଇଯିବ। ଗୋଡ଼ ଭଲ ହେଲା ପର୍ଯ୍ୟନ୍ତ ଆମ ଘରେ ରହିଯା। କିଛି ଅସୁବିଧା ହେବନି। ତୋର ଯତ୍ନ ମୁଁ ନେଉଥିବି। ଗୋଡ଼ ଠିକ୍ ହେଇଗଲେ, ଫୁରକିନା ତୋ' ବୋଉ ପାଖକୁ ଉଡ଼ିଯିବୁ।"

ଦିନେ କବିତା ଆସି ବାଇଚଢ଼େଇ ପାଖରେ ବସିଲା। ବାଇଚଢ଼େଇ କହିଲା, "କବିତାଅପା, ଘରଚଟିଆ ଆଉ ବାଇଚଢ଼େଇ ଆମେ ଦୁଇଭାଇ। କୃଷକର ଚାଳଘରମାନଙ୍କରେ ଘରଚଟିଆ ବସା କରି ରହୁଥିଲାବେଳେ ଆମେ ଡେଙ୍ଗା ଡେଙ୍ଗା ଗଛମାନଙ୍କରେ ବସା ବୁଣି ରହୁ; କିନ୍ତୁ ଆମେ ଉଭୟ କୃଷକର ବନ୍ଧୁ। ତାଙ୍କର ଉପକାର କରୁ । ସେ କରିଥିବା ଫସଲରୁ ପୋକଜୋକ ଆମେ ଖାଇଦେଉ। ଫଳରେ ଫସଲ ରକ୍ଷା ପାଏ। ପାଣିପାଗ ବିଷୟରେ ଚାଷୀଙ୍କୁ ଆମେମାନେ ମଧ୍ୟ କିଛି କିଛି ସୂଚନା ଦେଉ। ଗାଁ'ଦାଣ୍ଡରେ ଘରଚଟିଆ ଧୂଳିଘର ଖେଳିଲେ, ଚାଷୀ ଜାଣିପାରେ ଯେ ଦଶ ବାରଘଣ୍ଟା ମଧ୍ୟରେ ବର୍ଷା ହେବ। ତେଣୁ ସେ ବିଲରେ ବିହନ ବୁଣିଦିଏ। କେଉଁ ଦିଗରୁ ବେଶି ବର୍ଷା ଓ ବାତ୍ୟା ଆସିବ, ଆମେ ବାଇଚଢ଼େଇମାନେ ତାହା ଯଥେଷ୍ଟ ଆଗରୁ ଜାଣିପାରୁ। ତେଣୁ ଆମ ବସାର ଦ୍ୱାର ତା'ର ବିପରୀତ ଦିଗକୁ ରଖୁ। ଆମ ବସାର ଦ୍ୱାରକୁ ଦେଖି ଚାଷୀ ଜାଣିପାରେ ଯେ ସେଇ ବର୍ଷ କେଉଁ ଦିଗରୁ ଅଧିକ ବର୍ଷା ଓ ତୋଫାନ ହେବ। କିନ୍ତୁ ଦୁଃଖର କଥା, କବିତାଅପା, ଲୋକଙ୍କର ଏତେ ଉପକାର ଆମେ କରୁଥିଲେ ବି ସେମାନେ ଆମକୁ ଅଣଦେଖା କରୁଛନ୍ତି। ଆମମାନଙ୍କ ପ୍ରତି ସେମାନଙ୍କର ଟିକିଏ ବି ଦୟାମାୟା ନାହିଁ। ଦେଖୁନୁ, ମୁଁ ସେଦିନ କେତେ ଧାନ ଅବା ଖାଇଥା'ନ୍ତି । ତେଲା ଫୋପାଡ଼ି ତୋ ବୋଉ ମୋ ଦୁଇଟାଯାକ ଗୋଡ଼ ଭାଙ୍ଗିଦେଲା । ତାଳଗଛ, ଖଜୁରିଗଛ, ବରଗଛ ପରି ଡେଙ୍ଗା ଡେଙ୍ଗା ଗଛ ଲୋକେ ଆଉ ଲଗାଉନାହାନ୍ତି। ଯାହା ବି ଥିଲା, ସେଗୁଡ଼ିକୁ ହାଣି ସଫା କରି ଦେଲେଣି। ବସା ବୁଣି ରହିବା ପାଇଁ ଆମେ ଆଉ ରାହା ପାଉନୁ। ଗାଁ'ଗଣ୍ଡାରେ ଚାଳଘର ଲୋପ ପାଇବାକୁ ବସିଲାଣି। ଘରଚଟିଆ ଆଉ ବସା କରି ରହିବେ କେଉଁଠି?

ଛତୁ ଫୁଟିଲା ପରି ଚାରିଆଡ଼େ ମୋବାଇଲ ଟାୱାର ମୁଣ୍ଡ ଟେକି ଠିଆ ହେଲାଣି। ସେଗୁଡ଼ିକରୁ ସର୍ବଦା କ୍ଷତିକାରକ ବିକିରଣ ବାହାରୁଛି। କଳକାରଖାନା ଓ ଗାଡ଼ିଘୋଡ଼ାର କଳାଧୂଆଁ ବାୟୁମଣ୍ଡଳରେ ମିଶୁଛି। ବିଲବାଡ଼ିରେ କୀଟନାଶକ ଔଷଧ ଅତିମାତ୍ରାରେ ପଡୁଛି। ବିଷ ପିଇ କୀଟପତଙ୍ଗ ମରୁଛନ୍ତି।। ଆମେ ଜାଣି ନ ପାରି ସେଇ କୀଟପତଙ୍ଗକୁ ଖାଇଦେଉଛୁ। ଫଳରେ ଆମେ ବି ମରିଯାଉଛୁ। ବାୟୁ, ମାଟି, ଜଳ, ଫଳ, ଫୁଲ, ଶସ୍ୟ ସବୁ ବିଷାକ୍ତ ହେଲାଣି। ଏଇ ପ୍ରଦୂଷିତ ଓ ପ୍ରତିକୂଳ ପରବେଶରେ ଆମୋମନେ ଆଉ ଉଧେଇ ପାରୁନୁ। ଆମ ସଂଖ୍ୟା ଦିନକୁଦିନ କମିବାରେ ଲାଗିଛି। ଦିନ ଆସିବ, ଯେତେବେଳେ ଆମେ ଲୋପ ପାଇ ଯାଇଥବୁ। କବିତା-ଅପା ସେତେବେଳେ ତୁମେ ଆମକୁ କେବଳ ଚିଡ଼ିଆଖାନା ବା ଯାଦୁଘରେ ଦେଖିବ।" ଏଇପରି ସେମାନଙ୍କ ଗପସପରେ ପନ୍ଦରଟା ଦିନ ଚାଲିଗଲା। ବାଇଚଢ଼େଇ ଗୋଡ଼ରୁ ବ୍ୟାଣ୍ଡେଜ ଖୋଲି କବିତା ଦେଖିଲା ଯେ ତାର ଦୁଇଟାଯାକ ଗୋଡ଼ ଠିକ୍ ହେଇଯାଇଛି। ବାଇଚଢ଼େଇର ଆନନ୍ଦ କହିଲେ ନ ସରେ। ସେ କହିଲା, "କବିତାଅପା, ମତେ ବଞ୍ଚେଇଦେଲୁ। ତୋ ଋଣ ସାତ ଜନ୍ମରେ ସୁଝି ପାରିବିନି। କିନ୍ତୁ ଯିବା ପୂର୍ବରୁ ଗୋଟିଏ ମନ୍ତ୍ର ତୋତେ

ଶିଖେଇ ଦେଉଛି । ସେଇ ମନ୍ତ୍ର ପଢ଼ି ଗୋଟିଏ ମାତ୍ର ଚାଉଳରେ ହାଣ୍ଡିଏ ଭାତ ଆଉ ଖଣ୍ଡେ ମାତ୍ର ପରିବାରେ ହାଣ୍ଡିଏ ତିଅଣ ରାନ୍ଧିପାରିବୁ । କିନ୍ତୁ ଗୋଟିଏ କଥା ମନେ ରଖିଥିବୁ-- ଖାଇବାକୁ ନ ପାଇ ଯେତେବେଳେ ଲୋକମାନେ ମରିଯାଉଥିବେ, କେବଳ ସେଇ ସମୟରେ ତୁ ଏଇପରି ରାନ୍ଧି ସେମାନଙ୍କୁ ପରଶିବୁ ।" ଏହା କହି କବିତାଠୁ ବିଦାୟ ନେଇ ବାଇଚଢ଼େଇ ଫୁର୍‌କିନା ତା ମାଆ ପାଖକୁ ଉଡ଼ିଗଲା ।

ଇତିମଧ୍ୟରେ ପନ୍ଦର ବର୍ଷ ଅତିକ୍ରାନ୍ତ ହେଲା । ସୁବୀର ରାୟଙ୍କର ବଡ଼ବୋହୂ ହେଇ ଏବେ ମଧୁପୁର ଗ୍ରାମକୁ କବିତା ବାହା ହେଇ ଆସିଛି । ସେତେବେଳ ମଧୁପୁର ଅଞ୍ଚଳରେ ଘୋର ଦୁର୍ଭିକ୍ଷ ପଡ଼ିଥାଏ । ଖାଇବାକୁ ନ ପାଇ ଲୋକ ମରୁଥାନ୍ତି । ଏହା ଦେଖି ବାଇଚଢ଼େଇ ମନ୍ତ୍ର କଥା କବିତାର ମନେପଡ଼ିଲା । ଭୋକିଲା ଲୋକଙ୍କୁ ବଞ୍ଚେଇବା ପାଇଁ ସେ ଅଣ୍ଟା ଭିଡ଼ିଲା । ମୋଟିଏ ଗୋଟିଏ ଚାଉଳ ପକେଇ ହାଣ୍ଡିଏ ହାଣ୍ଡିଏ ଭାତ । ଖଣ୍ଡେ ଖଣ୍ଡେ ପରିବା ପକେଇ ହାଣ୍ଡିଏ ହାଣ୍ଡିଏ ତରକାରି ରାନ୍ଧି ଲୋକଙ୍କୁ ପ୍ରତିଦିନ ଖାଇବାକୁ ଦେଲା । ଲୋକମାନେ କବିତାକୁ ସ୍ୱୟଂ ଲକ୍ଷ୍ମୀଠାକୁରାଣୀ ବୋଲି ବିଶ୍ୱାସ କଲେ ।

ଦିନେ କବିତା ସବୁ ଲୋକଙ୍କୁ ଡାକି କହିଲା, "ଫସଲରେ କୀଟନାଶକ ଔଷଧ ପକେଇ ପକେଇ ଆପଣମାନେ ଥକିଲେଣି । ପୋକଜୋକ ମରୁନାହାନ୍ତି । ବିଷ ସେମାନଙ୍କ ଦେହସୁହା ହେଲାଣି । ପୋକଙ୍କୁ ଦମନ କରିବା ପାଇଁ ଆପଣମାନେ ପୂର୍ବ ପରି ଘରଚଟିଆ ଓ ବାଇଚଢ଼େଇଙ୍କ ସାହାଯ୍ୟ ଲୋଡ଼ନ୍ତୁ । ଦୁଃଖର କଥା, ଏ ଅଞ୍ଚଳରେ ଏଇ ଦୁଇପ୍ରକାର ଚଢ଼େଇ ପ୍ରାୟ ଦେଖା-ନାହାନ୍ତି । ବାଇଚଢ଼େଇମାନେ ବସା କରିବା ପାଇଁ ଏ ଅଞ୍ଚଳରେ ତାଳଗଛ, ଖଜୁରିଗଛ, ବରଗଛ ପରି ବଡ଼ ବଡ଼ ଗଛ ପ୍ରାୟ ନାହିଁ । ଘରଚଟିଆ ବସା ବାନ୍ଧିବା ପାଇଁ ଚାଳଘର ଖୁବ୍ କମ୍ ଅଛି । ହେଳା ନ କରି ଆପଣମାନେ ଉକ୍ତ ଗଛଗୁଡ଼ିକୁ ବହୁ ସଂଖ୍ୟାରେ ଲଗାନ୍ତୁ ଏବଂ ଘର-ମାନଙ୍କରେ କୃତ୍ରିମ ଘରଚଟିଆ ବସା ଟାଙ୍ଗନ୍ତୁ । ମୋବାଇଲ ଟାୱାରଗୁଡ଼ିକ ଉପରେ କଟକଣା ଜାରି କରାନ୍ତୁ । "ଲୋକେ ତ କବିତାକୁ ଲକ୍ଷ୍ମୀଠାକୁରାଣୀ ବୋଲି ମାନୁଥିଲେ । ତେଣୁ ତା' ଉପଦେଶକୁ ଅକ୍ଷରେ ଅକ୍ଷରେ କାମରେ ଲଗେଇଲେ । କେତେଟା ବର୍ଷରେ ଗାଁ ସବୁ ବୃକ୍ଷରାଜିରେ ଶୋଭା ପାଇଲା । ବାଇଚଢ଼େଇ ଓ ଘରଚଟିଆଙ୍କ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଲା । ସେମାନଙ୍କ ଚେଁଚାଁରେ ସେ ଅଞ୍ଚଳ ମୁଖରିତ ହେଲା । ପଲ ପଲ ଘରଚଟିଆ ଓ ବାଇଚଢ଼େଇ ଉଡ଼ିଯାଇ ଫସଲରୁ ପୋକଜୋକ ଖାଇ ସଫା କରିଦେଲେ ।

(ଏକ ଲୋକକଥା ଆଧାରରେ)

*ରେବତୀ (୧୫୮୧ ପ୍ଲଟ), ଖଣ୍ଡଗିରିବାରି, ଭୁବନେଶ୍ୱର-୩୦*

---



ପଦ୍ମନାଭବାବୁ (ପୁଅକୁ)-- ଆଜି କ'ଣ ସ୍କୁଲ୍‌କୁ ଯିବୁନାହିଁ, ଟି.ଭି. ପାଖରେ ବସିଲୁଣି ?

ପୁଅ-- ବାପା ! ଆଜି ଆମ ସ୍କୁଲ୍ ନାହିଁ ।

ବାପା-- କ'ଣ କହିଲୁ, ସ୍କୁଲ୍ ନାହିଁ ? ଏତେବଡ଼ ସ୍କୁଲ୍‌ଟା ଗଲା କୁଆଡ଼େ ?

  

ଦୁଇଜଣ ମଦ୍ୟପ ଉଡ଼ାଜାହାଜରେ ଯାତ୍ରା କରୁଥିଲେ । ସେଥିମଧ୍ୟରୁ ଜଣେ କହିଲା, "ମୋତେ ଏଠି ବସି ବସି ବହୁତ ବିରକ୍ତ ଲାଗିଲାଣି । ଭାବୁଛି, ଟିକିଏ ବାହାରେ ବୁଲିଆସିବି ।"

୨ୟ ମଦ୍ୟପ-- ଯାଉଛ ଯଦି ଯାଅ, ତେବେ ଛତାଟି ସାଙ୍ଗରେ ନେଇ ଯାଅ । ବାହାରେ ବାଦଲ ଦେଖାଯାଉଛି, ବର୍ଷା ହୋଇପାରେ ।



# ଟଙ୍କା

ଶ୍ରୀମତୀ ମନୋରମା ମହାପାତ୍ର

ଟଙ୍କା, ଟଙ୍କା, ଟଙ୍କା
ଟଙ୍କା ନ ଥିଲେ ଚଳିବା ପାଇଁ
ମନେ ରହିବ ଶଙ୍କା ।
ଟଙ୍କାରେ ଆମେ କିଣିବା ବହି
ଖାଇବା ପାଇଁ ଜିଇଁବା ପାଇଁ
ସବୁ ଜିନିଷ ଟଙ୍କାରେ ମିଳେ ଜାଣ
ଟଙ୍କାକୁ କେବେ ହେୟ ବୋଲି ନ ମଣ
ସବୁ କାମରେ ଲୋଡ଼ା
ଯେ ହେବ ଟଙ୍କା
ଟଙ୍କା ନ ଥିଲେ ଚଳିବ ନାହିଁ
ଜୀବନ ହେବ ଫାଙ୍କା ।
ଟଙ୍କା ଆମକୁ ସାହାଯ୍ୟ କରେ
ସେ ଆମ ସହଚର
ଟଙ୍କାର ଆମେ ଚାକର ହେଲେ
ହୋଇବା ହରବର ।
ନୀତି ଅନୀତି ବିଚାର ନାହିଁ
ଟଙ୍କା ପଛରେ ଗୋଡ଼େଇ ଥାଇ
ଯିଏ ଜାଣ ସେ ମନ୍ଦ
ଟଙ୍କା ମାଲିକ ହୋଇଲେ ବାବୁ
ପକେଇଦେବ ଫାନ୍ଦ ।
ସେହି ଫାନ୍ଦରେ ପଡ଼ିଲେ ଜାଣ
କରିବ ପାପ କାମ
ତୁମର ବୁଦ୍ଧି ବଣା ହୋଇବ,
ବୁଡ଼ିବ ଦେଶ ନାମ ।
ଭଲ କାମରେ ଟଙ୍କାକୁ ଯିଲେ
ଖରଚ କଲେ ଜାଣ
ବଡ଼ ମଣିଷ ହୋଇ ବିଦେଶେ
ପାଇବ ସନମାନ,
ଆପଣା ମାଟି, ଜନମ ମାଟି
ଦୁଃଖ ହରିବା ପାଇଁ
ଟଙ୍କା ଖରଚ କରି ପାରିଲେ
ସୁଖୀ ହେବରେ ଭାଇ ।
ସତ୍ୟ ପଥରେ- ନ୍ୟାୟ ପଥରେ
ଥାଇ ଅରଜ ଟଙ୍କା
ସେ ଟଙ୍କା ତୁମ ବୋଲ ମାନିବ
ହରିବ ସବୁ ଶଙ୍କା ।
ବାଜେ ଖରଚ କରିବ ନାହିଁ-
ସାଇଁରେ ରଖିଥିବ
ଦୁଃଖୀ ଗରିବ ରୋଗୀର ଲୋଡ଼ା
ଥିଲେ ଅବଶ୍ୟ ଦେବ ।

*ପଦାରବିନ୍ଦ ନିଳୟ, ଶ୍ରୀବିହାର କଲୋନୀ, କଟକ- ୮*

ଯେତେବେଳେ ତୁମକୁ ଶୋଷ ଲାଗି ଲାଗି ଆଉ ତୁମେ ଶୋଷ ଅନୁଭବ ନ କର, ସେତେବେଳେ ହିଁ ତୁମର ଶରୀର ଅଧିକ ଜଳ ଆବଶ୍ୟକ କରେ । କାରଣ ଶରୀର ଯେତେବେଳେ ଜଳବିହୀନ ହୋଇଯାଏ, ସେତେବେଳେ ତାହାର ଶୋଷ ଲାଗିବା ସ୍ନାୟୁ କାମ କରେନାହିଁ ।

# ଅହଙ୍କାର ଓ ବିନୟ

ଡକ୍ଟର ବିଜୟ ଚନ୍ଦ୍ର ମହାରଣା

ଆଠଗଡ଼ ରାଜା କୁବେର ଦେଓ। ରାଜା ଥରେ ଗୁରୁଙ୍କ ପାଖକୁ ଯାଇ ଜିଗର କଲେ-- "ଗୁରୁଦେବ ! କୁହନ୍ତୁ, ମୋର ଆଚରଣରେ କେଉଁଠି ତ୍ରୁଟି ରହୁଛି?" ଏକଥା ଶୁଣି ଗୁରୁଦେବ କହିଲେ-- "ବାବୁରେ ! ମୁଁ ଯାହା ଦେଖୁଛି, ତୋ'ଭିତରେ ଅହଙ୍କାର ଭରି ରହିଛି।" ଏହା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇଗଲେ। ଏ ପର୍ଯ୍ୟନ୍ତ ତାଙ୍କ ମନରେ ଧାରଣା ଥିଲା ଯେ ସେ ଜଣେ ନିରହଙ୍କାରୀ ବ୍ୟକ୍ତି। ତଥାପି ଗୁରୁଦେବ ତାଙ୍କ ଭିତରେ ଅହଙ୍କାର ଦେଖିଲେଣି। ଗୁରୁ ଗଲାପରେ ରାଜା ନିଜ ଆଚରଣକୁ ଆହୁରି ମାର୍ଜିତ କରିବାକୁ ସ୍ଥିର କଲେ। ସେ ଆଗଠାରୁ ଆହୁରି ବିନୟୀ ହୋଇଗଲେ। ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା-- "ଆମ ରାଜାଙ୍କ ଭଳି ବିନୟୀ କେହି ନାହାନ୍ତି।"

ତା'ପରେ ଗୁରୁଦେବ ତୀର୍ଥରେ ବାହାରିଥା'ନ୍ତି। ରାଜା ତାଙ୍କରି ବାଟକୁ ଚାହିଁ ରହିଲେ। କିଛି ଦିନ ପରେ ଗୁରୁ ଫେରି ଆସିଲେ। ରାଜା ଏଥିରେ ଖୁସି ହୋଇ ଗୁରୁଙ୍କୁ କହିଲେ-- "ମହାନୁଭବ ! ଚାଲନ୍ତୁ ଟିକେ ପାଦରେ ଚାଲି ଚାଲି ବୁଲିଆସିବା।" ଗୁରୁ ରାଜାଙ୍କ କଥାରେ ରାଜି ହେଲେ। ଦୁହେଁ ବାହାରିଲେ।

ବାଟସାରା ରାଜାଙ୍କୁ ସମ୍ମାନ ମିଳୁଥାଏ। ରାଜା ପ୍ରତିନମସ୍କାର ଜଣାଉଥାନ୍ତି। ଦୁହେଁ ଶେଷରେ ଏକ ଦରିଦ୍ର ଚାଷୀଙ୍କ ଘରେ ପହଞ୍ଚିଲେ। ରାଜା ଘର ଆଗରେ ଠିଆ ହେବା ଦେଖି ଚାଷୀଟି ଦୌଡ଼ି ଆସିଲା, ହେଲେ ରାଜାଙ୍କୁ ବସିବାକୁ ଦେବା ପାଇଁ ତା'ପାଖରେ ସମ୍ବଳ ନ ଥିଲା। ସୁତରାଂ ସେ ତଳପିଣ୍ଡାକୁ ହାତରେ ପୋଛିଦେଲା। ରାଜା ସେଇ ପିଣ୍ଡାରେ ବସିଗଲେ। ଚାଷୀ ସହିତ ଭଲମନ୍ଦ କଥା ହେଲେ।

ରାଜା ଗୁରୁଙ୍କୁ ପଚାରିଲେ--"ଗୁରୁଦେବ ! ଏଥର ମୋ ଅହଙ୍କାର କମିଛି ତ ?" ଗୁରୁ କହିଲେ-- "ବାବୁରେ! ତୁ ସେମିତି ଅହଙ୍କାରୀ ହୋଇ ରହିଛୁ। ଏବେ କେବଳ ତୋ' ଅହଙ୍କାରରେ ପରିବର୍ତ୍ତନ ଆସିଛି। ତୋ'ପାଖରେ ଆସିଛି ବିନୟର ଅହଙ୍କାର। ଅତି ବିନୟୀ ହୋଇ ତୁ ଆଶା କରୁଛୁ ଯେ ତୋତେ ସମସ୍ତେ ନିରହଙ୍କାରୀ ବୋଲି କହି ପ୍ରଶଂସାରେ ପୋତି ପକାନ୍ତୁ। ତେଣୁ ତୋ' ବନୟଭାବ ଏକ ଛଳନା। ପ୍ରକୃତରେ ଯେ ନିରହଙ୍କାରୀ, ସେ ବିନୟୀ ହେବା ବଦଳରେ ପ୍ରଶଂସା ଚାହେଁନାହିଁ।"



ରାଜାଙ୍କ ମୁଣ୍ଡ ତଳକୁ ହୋଇଗଲା। ତା'ପରଦିନଠାରୁ ସେ ଅହଙ୍କାର ଛାଡ଼ିବାକୁ ପ୍ରତିଜ୍ଞା କଲେ।

*ବାଲିପଦର, ଗଞ୍ଜାମ-୭୬୧୧୧୭*



ଉତ୍ତର- ଦଶରଥ



ଶ୍ରୀ ସୁରେଶ କୁମାର ପଣ୍ଡା

### ✤✤ ମୋର ବିବେକ ଜାଗ୍ରତ ହୁଏ

ଦିନେ ଅନ୍ଧକାର ରାତ୍ରିରେ ଏକ ଶ୍ମଶାନ ରାସ୍ତା ଦେଇ ଯାଉଥାଆନ୍ତି ମହାନ୍ ଦାର୍ଶନିକ ତ୍ୱାଂଗ୍‌ତ୍ ସେ । ତାଙ୍କ ପାଦ କୌଣସି ଏକ କଠିନ ବସ୍ତୁରେ ବାଜିଲା । ଅଣ୍ଡାଳି ଦେଖିଲେ, ତାହା ହେଉଛି ଏକ ମଣିଷର ଖପୁରି । ମନେମନେ କ'ଣ ଚିନ୍ତା କଲେ କେଜାଣି,



ଖପୁରିଟି ଉଠେଇ ସେ ନିଜ ମୁଣିରେ ରଖିଲେ । ସେଦିନଠାରୁ ସେଇଟି ତାଙ୍କ ମୁଣିରେ ରହିଲା । ପ୍ରତିଦିନ ଖପୁରିଟିକୁ ବାହାର କରି କିଛି ସମୟ ନିରୀକ୍ଷଣ କରି ପୁଣି ତାକୁ ମୁଣିରେ ରଖି ଦେଉଥିଲେ । ତାଙ୍କୁ ବାରମ୍ବାର ଏପରି କରୁଥିବାର ଦେଖି ଜଣେ ଶିଷ୍ୟ ପ୍ରଶ୍ନ କଲେ, "ମନୁଷ୍ୟ ଖପୁରି ଭଳି ଏକ ମୂଲ୍ୟହୀନ ଓ ଅସୁନ୍ଦର ବସ୍ତୁକୁ ଫୋପାଡ଼ି ନ ଦେଇ ମୂଲ୍ୟବାନ ରତ୍ନ ଭଳି ଏଭଳି ଯତ୍ନର ସହିତ ସାଇତି ରଖିଛନ୍ତି କାହିଁକି ?"

"ଅନ୍ୟମାନେ ହୁଏତ ଏହାକୁ ଅସୁନ୍ଦର ଓ ତୁଚ୍ଛ ମନେ କରିପାରନ୍ତି, କିନ୍ତୁ ମୋ ନିମନ୍ତେ ଏହା ଅତ୍ୟନ୍ତ ମୂଲ୍ୟବାନ । ଯେତେବେଳେ ମୋ ମନରେ ଗର୍ବ ଓ ଅହଙ୍କାର ଦେଖାଯାଏ, ସେତେବେଳେ ମୁଁ ଖପୁରିଟି ବାହାର କରି ଘଡ଼ିଏ ଚାହେଁ । ମୋର ମଧ୍ୟ ଦିନେ ଏଇ ଖପୁରିର ଅବସ୍ଥା ହେବ-- ସେକଥା ଚିନ୍ତା କରିବା ସଙ୍ଗେ ସଙ୍ଗେ ମୋର ବିବେକ ଜାଗ୍ରତ ହୁଏ ।" ଉତ୍ତର ଦେଲେ ତ୍ୱାଂଗ୍‌ତ୍ ସେ ।

### ✤✤ ସମ୍ମାନ ବଢ଼େଇ ପାରିଛି

୧୮୯୬ରେ ଏଥେନସ୍‌ରେ ଅଲମ୍ପିକ୍ ପ୍ରତିଯୋଗିତା ଅନୁଷ୍ଠିତ ହେଉଥାଏ । ସେଇ ପ୍ରତିଯୋଗିତାରେ ସାମିଲ୍ ଥିଲା ସାଇକେଲ୍ ଚାଳନା । ସମସ୍ତ ପ୍ରତିଯୋଗୀଙ୍କୁ ପଛରେ ପକାଇ ଗ୍ରୀସ୍‌ର କୋଲେଟିସ୍ ଓ ଫ୍ରାନସ୍‌ର ଲିଓନ୍ ଫ୍ଲେମିଙ୍ଗ୍ ବହୁତ ଆଗକୁ ଚାଲି ଆସିଥାଆନ୍ତି । ସମସ୍ତ ଦର୍ଶକ ମନେକରୁଥିଲେ-- ଉଭୟଙ୍କ ମଧ୍ୟରୁ ଜଣେ ନିଶ୍ଚିତ ଭାବରେ ସ୍ୱର୍ଣ୍ଣପଦକ ଲାଭ କରିବ; କିନ୍ତୁ ରାସ୍ତାରେ ହଠାତ୍ କୋଲେଟିସ୍‌ଙ୍କ ସାଇକେଲ୍‌ରୁ ଚେନ୍ ବାହାରି ପଡ଼ିଲା । ତାକୁ ଠିକ୍ କରିବାକୁ ତାଙ୍କୁ ପନ୍ଦର କୋଡ଼ିଏ ସେକେଣ୍ଡ ଲାଗିଲା । ଫ୍ଲେମିଙ୍ଗ୍ ଯଦି ଚାହିଁଥାଆନ୍ତେ, ସେହି ସମୟ ମଧ୍ୟରେ ଅନେକ ଆଗକୁ ଚାଲି ଆସିଥାଆନ୍ତେ । କିନ୍ତୁ ଅପୂର୍ବ ଖେଳଭାବନା ଦେଖେଇ ଫ୍ଲେମିଙ୍ଗ୍ ସେତକ ସମୟ ଅପେକ୍ଷା କଲେ । କୋଲେଟିସ୍ ଯେତେବେଳେ ସାଇକେଲ୍ ଚେନ୍ ସଜାଡ଼ିଲେ, ସେଠାରୁ ପୁଣି ଥରେ ଦୁହେଁ ଆଗେଇଲେ । ଅନ୍ୟାନ୍ୟ ପ୍ରତିଯୋଗୀ



ଦୁଇ ତିନି ମିନିଟ୍ ମଧ୍ୟରେ ସେଠାରେ ପହଞ୍ଚିବାର ସମ୍ଭାବନା ନ ଥିଲା ।

ପ୍ରତିଯୋଗିତାରେ ଫ୍ଲେମିଙ୍ଗ୍‌କୁ ଏଥିପାଇଁ ଦ୍ୱିତୀୟ ସ୍ଥାନରେ ରହି ରୌପ୍ୟପଦକରେ ସନ୍ତୁଷ୍ଟ ହେବାକୁ ପଡ଼ିଲା । ତାଙ୍କର କେତେଜଣ ବନ୍ଧୁ ଅସନ୍ତୁଷ୍ଟ ହେବାରୁ ଫ୍ଲେମିଙ୍ଗ୍ କହିଲେ-- ବନ୍ଧୁଗଣ ! ମୁଁ ଆଜି ହୁଏତ ସ୍ୱର୍ଣ୍ଣପଦକରୁ ମୋ ଦେଶକୁ ବଞ୍ଚିତ କରିଛି, କିନ୍ତୁ ଜଣେ ଅସହାୟ ପ୍ରତିଯୋଗୀ ପ୍ରତି ଖେଳଭାବନା ପ୍ରଦର୍ଶନ କରି ମୁଁ ଫ୍ରାନସ୍‌ର ସମ୍ମାନକୁ ବହୁଗୁଣରେ ବଢ଼ାଇ ପାରିଛି ।

### ✣✣ ଖର୍ଚ୍ଚକାଟ ବ୍ୟବସ୍ଥା

ଡା. ଶ୍ୟାମାପ୍ରସାଦ ମୁଖାର୍ଜିଙ୍କ ଜୀବନର ଏକ ଘଟଣା । ଥରେ କେତେଜଣ ସାମ୍ବାଦିକ ତାଙ୍କୁ ସ୍ୱାଗତ କରିବାକୁ ଆସି ଷ୍ଟେସନ୍‌ରେ ପହଞ୍ଚିଲେ । ପ୍ରଥମଶ୍ରେଣୀ ବଗିରେ ତାଙ୍କୁ ନ ପାଇ ନିରାଶ ହୋଇ ଫେରିଯିବାକୁ ଉଦ୍ୟତ ହେବାବେଳକୁ ସେ ହସି ହସି ଗୋଟିଏ ତୃତୀୟ ଶ୍ରେଣୀ ଡବାରୁ ଓହ୍ଲାଇଲେ । ତାଙ୍କ ଭଳି ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କୁ ତୃତୀୟ ଶ୍ରେଣୀ ଡବାରୁ ଓହ୍ଲେଇବାର ଦେଖି ଜଣେ ସାମ୍ବାଦିକ ବିସ୍ମିତ ହୋଇ ପଚାରିଲେ, "ଆପଣ ସମ୍ଭବତଃ ଜୀବନରେ ପ୍ରଥମଥର ପାଇଁ ତୃତୀୟ ଶ୍ରେଣୀରେ ଯାତ୍ରା କରିଛନ୍ତି?"

ଡାକ୍ତର ମୁଖାର୍ଜୀ ଉତ୍ତରଦେଲେ, "ନାଁ, ମୁଁ



ସଦାସର୍ବଦା ଏଇ ତୃତୀୟ ଶ୍ରେଣୀରେ ଯାତ୍ରା କରେ । ଆପଣ ଜାଣନ୍ତି ଆର୍ଥିକ ଦୃଷ୍ଟିରୁ ଆମର ସଂସ୍ଥା କେତେ ଦୁର୍ବଳ । ସେଇଥି- ପାଇଁ ଏ ଖର୍ଚ୍ଚକାଟର ବ୍ୟବସ୍ଥା । ଏହାଦ୍ୱାରା ଆମର ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସହଜରେ ସମ୍ପନ୍ନ ହୋଇଥାଏ ।

## ସାଧାରଣଜ୍ଞାନ ପରୀକ୍ଷା

ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ

୧ । ଶୁଣିବା ବ୍ୟତୀତ କାନ ଆମ ଶରୀରର ଅନ୍ୟ କେଉଁ ଅତ୍ୟାବଶ୍ୟକ ଆବଶ୍ୟକତା ପୂରଣ କରିଥାଏ?

୨ । ସିଲ୍‌ଭର କ୍ଲୋରାଇଡ୍ (Silver Chloride) ପାଣିରେ ଦ୍ରବୀଭୂତ ହୋଇଯାଇଥାଏ । ଏହି ଉକ୍ତିଟି ସତ ନା ମିଛ ?

୩ । ଏସିଆର ଆଲୋକ (Light of Asia) ଭାବରେ କିଏ ପରିଚିତ ?

୪ । ସଙ୍ଗୀତ (Music)ର ପୁରାତନ ନାମଟି କ'ଣ ଥିଲା ?

୫ । 'ଚାମୋଲି' କେଉଁ ରାଜ୍ୟର ଏକ ଜିଲ୍ଲାର ନାମ?

୬ । ବିଶ୍ୱର ସର୍ବପୁରାତନ ଖେଳର ନାମ କ'ଣ ?

୭ । 'ମହାଭାରତ'ର ମୂଳ ନାମଟି କ'ଣ ଥିଲା ?

୮ । ଗୀତାରହସ୍ୟମ୍ (Getharahasyam) ପୁସ୍ତକର ରଚୟିତା କିଏ ?

୯ । ବିଶ୍ୱ ହୃଦୟ ଦିବସ (World Heart Day) କେବେ ପାଳନ କରାଯାଇଥାଏ ?

୧୦ । RDXର ପୂର୍ଣ୍ଣରୂପଟି କ'ଣ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ- ୭୫୯୧୦୦*

*(ଉତ୍ତର ୩୫ ପୃଷ୍ଠାରେ)*

# ଭାରତର ଭାଷା

ଶ୍ରୀ ଶୁଭେନ୍ଦ୍ର ମୋହନ ଶ୍ରୀଚଂନ୍ଦନ ସିଂହ

ପିପଲ୍ସ ଲିଂଗୁ୍ୟଷ୍ଟିକ୍ ସର୍ଭେ ଅଫ୍ ଇଂଡିଆ (ପି.ଏଲ୍.ଏସ୍.ଆଇ.) ନିକଟରେ ସାରା ଭାରତରେ ତାଙ୍କର ଭାଷା ସର୍ବେକ୍ଷଣ ଶେଷ କରିଛନ୍ତି। ଏହାର ରିପୋର୍ଟ ପଚାଶ ଖଣ୍ଡରେ ପ୍ରକାଶ ପାଇବାକୁ ଯାଉଚି। ସର୍ବମୋଟ ବାସ୍ତରୀଟି ବହି ହେବ। ସ୍ୱାଧୀନତା ପରେ ଏହା ହିଁ ଭାରତରେ ପ୍ରଥମ ଭାଷିକ ସର୍ବେକ୍ଷଣ। ପରାଧୀନ ଭାରତରେ ୧୮୯୮ରୁ ୧୯୨୮ ଯାଏଁ ଯେଉଁ ଭାଷା ସର୍ବେକ୍ଷଣ ହୋଇଥିଲା, ତାର ନେତୃତ୍ୱ ନେଇଥିଲେ ଜର୍ଜ ଆବ୍ରାହାମ ଗ୍ରୀୟର୍ସନ୍। ସେ ଥିଲେ ଆୟର୍ଲାଣ୍ଡ ନିବାସୀ। ଇଂରେଜମାନଙ୍କ ପ୍ରଶାସନରେ ଥିଲେ ଜଣେ ଉଚ୍ଚ ପଦାଧିକାରୀ। ସେ ହିଁ ଓଡ଼ିଆ ଭାଷାରକ୍ଷା ଯୁଦ୍ଧରେ ଓଡ଼ିଆମାନଙ୍କୁ ଦୃଢ଼ ସମର୍ଥନ ଜଣାଇ ବଙ୍ଗଳା ଓ ଓଡ଼ିଆ ମଧ୍ୟରେ ଓଡ଼ିଆର ଶ୍ରେଷ୍ଠତ୍ୱ ଓ ଗୁରୁତ୍ୱ ପ୍ରମାଣ କରିଥିଲେ।

ଏବେ ଭାରତର ଲୋକମାନେ ୬୮୦ଟି ଭାଷା ବ୍ୟବହାର କରନ୍ତି। ୮୬ଟି ଲିପିରେ ଲେଖାଲେଖି କରନ୍ତି। ଗଲା ୫୦ ବର୍ଷ ମଧ୍ୟରେ ଭାରତରୁ ଲୋପ ପାଇଛି ୨୫୦ ଭାଷା। ପି.ଏଲ୍.ଏସ୍.ଆଇ.ର ଅଧ୍ୟକ୍ଷ ଶ୍ରୀ ଜି. ଏନ୍. ଦେବୀ କହନ୍ତି ଯେ-- ଏ ସର୍ବେକ୍ଷଣରେ ୩୦୦୦ ବିଶେଷଜ୍ଞ, ୮୫ଟି ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟର ସହଯୋଗ ପାଇଛନ୍ତି। ଏଥିପାଇଁ ଦୀର୍ଘ ୨୧ ବର୍ଷ ସମୟ ଲାଗିଛି। ଏ କଠିନ କାମରେ ସରକାରୀ ସାହାଯ୍ୟ ନିଆଯାଇନି। ବହିରେ ଭାଷାଗୁଡ଼ିକର ଭୌଗୋଳିକ ଓ ଐତିହାସିକ ସ୍ଥିତି, ଜନ୍ମଜାତକ, କଳା ଓ ସଂସ୍କୃତି, ଲୋକସାହିତ୍ୟ ପ୍ରଭୃତିର ବର୍ଣ୍ଣନା ରହିଛି। ପଶ୍ଚିମବଙ୍ଗରେ ୩୮ଟି ଭାଷା ଓ ୯ଟି ଲିପି ଚଳେ। ଏ ରାଜ୍ୟରେ ୧୦ଟି ଭାଷା ଦୁଃସ୍ଥ ଅବସ୍ଥାରେ ଅଛି। ସେଗୁଡ଼ିକ ଅଧିକ ଦିନ ବଞ୍ଚିପାରିବନି ବୋଲି ସନ୍ଦେହ କରାଯାଉଛି।

୧୦,୦୦୦ରୁ ଅଧିକ ଲୋକ କହୁଥିବା ଭାଷା ସଂଖ୍ୟା ୧୨୨। ୨୨ଟି ଭାଷାକୁ ସିଡ୍ୟୁଲ୍ଡ ବୋଲି ଚିହ୍ନିତ କରାଯାଇଛି। ବାକି ଭାଷାଗୁଡ଼ିକ ୧୦,୦୦୦ରୁ କମ୍ ଲୋକ ବ୍ୟବହାର କରିଥାନ୍ତି। କେତେକ ଭାଷା ମୁମୂର୍ଷୁ ଅବସ୍ଥାରେ ରହିଛି। ଶ୍ରୀ ଦେବୀ କହନ୍ତି ଯେ ଉଭୟ ସରକାରୀ ଓ ବେସରକାରୀ ସାହାଯ୍ୟରେ ସବୁ ଭାଷାର ସର୍ବତୋମୁଖୀ ବିକାଶ କାମ୍ୟ।

*୨୦୬, ହନୀ ଅର୍ଚ୍ଚନା କଂପ୍ଲେକ୍ସ, ବ୍ଲକ୍- ୨, ଊଁଟଖାନା, ନାଗପୁର- ୪୪୦୦୦୯, ମହାରାଷ୍ଟ୍ର*

❀❀

---




✷ ମିଳିତ ଜାତିସଂଘର ୨୦୧୧ ମସିହା ଜଳବାୟୁ ପରିବର୍ତ୍ତନ ସମ୍ମିଳନୀ (Climate Change Conference) ଡର୍ବାନ୍‌ଠାରେ ଅନୁଷ୍ଠିତ ହୋଇଥିଲା।

✷ ଆନ୍ତର୍ଜାତିକ ମାତୃଭାଷା ଦିବସ ଫେବୃଆରୀ ୨୧ ତାରିଖରେ ପାଳନ କରାଯାଇଥାଏ।

✷ CSTOର ପୂର୍ଣ୍ଣରୂପ ହେଉଛି Collective Security Treaty Organisation।

✷ ପ୍ରଖ୍ୟାତ କଥକ ନୃତ୍ୟଶିଳ୍ପୀ ଗୋପୀକୃଷ୍ଣ ଏକାଦିକ୍ରମେ ନଅ ଘଣ୍ଟା କୋଡ଼ିଏ ମିନିଟ୍ ନୃତ୍ୟ କରି ରେକର୍ଡ଼ ପ୍ରତିଷ୍ଠା କରିଥିଲେ।

✷ ବୌଦ୍ଧଧର୍ମର 'ଜାତକ କଥା'ଗୁଡ଼ିକ ପାଲି ଭାଷାରେ ଲେଖାଯାଇଥିଲା।

# କାହାରି ଉପକାର ଭୁଲନାହିଁ

ଶ୍ରୀ ଦେବେନ୍ଦ୍ରନାଥ ଭୂୟାଁ

ପାହାଡ଼ର ପାଦଦେଶରେ ହ୍ରଦଟିଏ । ତା'ର ଗଭୀର ନୀଳ ଜଳରେ ରାଘବ ବାଳିଆଟିଏ ବେଶ୍ ଖୁସିରେ ଥିଲା । ଥରେ ସାତଦିନ ସାତରାତି ଅନବରତ ବର୍ଷା ହେଲା । ପାଖ ନଈରେ ବନ୍ୟା ଆସିଲା । ବନ୍ୟାପାଣି ହ୍ରଦ ଭିତରକୁ ପଶିଆସିଲା । ରାଘବ ଆଗପଛ ନ ବିଚାରି ହ୍ରଦରୁ ବାହାରି ବଢ଼ିପାଣିରେ ମନ ଆନନ୍ଦରେ ପହଁରୁ ପହଁରୁ ଅଜାଣତରେ ହ୍ରଦଠାରୁ ଅନେକ ଦୂରକୁ ଚାଲିଆସିଲା । କିଛି ଦିନ ପରେ ବନ୍ୟା ପାଣି ଛାଡ଼ିଗଲା । ନଈପାଣି ନଈକି ଗଲା । ଗହୀର ଭିତରର ଗୋଟିଏ ଟୁବି ଗାଡ଼ିଆରେ ରାଘବ ବାଳିଆ ରହିଗଲା । ଗାଡ଼ିଆରେ ଥିବା ଚୁନାମାଛକୁ ବେଶ୍ କିଛି ଦିନ ପେଟ ପୂରେଇ ଖାଇଲା । ଚାହୁଁ ଚାହୁଁ ଖରାଦିନ ଆସିଗଲା । ଖରା ତେଜରେ ଗାଡ଼ିଆର ପାଣି ଶୁଖିବାରେ ଲାଗିଲା । ତାକୁ ପହଁରିବା ପାଇଁ ପାଣି ନିଅଣ୍ଟ ହେଲା । ଚୁନାମାଛ ବି ସରିଗଲେ । ବାଳିଆ ମୁଣ୍ଡରେ ଚେତା ପଶିଲା । ଭାବିଲା ଦିନ କେତେଟା ପରେ ଗାଡ଼ିଆରୁ ପାଣି ଶୁଖିଯିବ । ତା'ପରେ ସେ ଶୁଖିଲାଟାରେ ଛଟପଟ ହେଇ ମରିବ ।

ନିଶ୍ଚିତ ମରଣକୁ ଅପେକ୍ଷା କରି ଲୁହ ଗଡ଼ଉଥିଲା ରାଘବ ବାଳିଆ । ସାରସ ପକ୍ଷୀଟିଏ ତାର ଲମ୍ବା ଡେଣା ମେଲେଇ ଆକାଶରେ ଉଡ଼ି ଯାଉଥିଲା । ବାଳିଆ ବିକଳରେ ଡାକ ପକେଇଲା , "ସାରସ ଭାଇ ! ମୋତେ ମରଣ ମୁହଁରୁ ରକ୍ଷା କର । ତୁମର ଅନେକ ଧର୍ମ ହେବ ।" ସାରସ ବାଳିଆର ଡାକ ଶୁଣି ତଳକୁ ଓହ୍ଲେଇଲା ଓ ତା'ଦୁଃଖ କାହାଣୀ ଶୁଣି ତରଳିଗଲା ।

ରାଘବ ବାଳିଆ ସାରସର ପିଠିର୍ ପରକୁ କାମୁଡ଼ି ଧରି ହଲଚଲ ନ ହୋଇ ଶୋଇ ରହିଲା । ସାରସ ଆକାଶରେ ଉଡ଼ିଉଡ଼ି ଗୋଟିଏ ନଦୀ କୂଳରେ ପହଞ୍ଚିଲା । ବାଳିଆ ସାଙ୍ଗେ ସାଙ୍ଗେ ନଈର ଗଭୀର ଜଳକୁ ଡେଇଁ ପଡ଼ିଲା । ନଦୀର ନୀଳ ଜଳରେ ପହଁରୁ ପହଁରୁ ବାଳିଆ କହିଲା, "ସାରସ ଭାଇ ! ତୁମ ଉପକାର ମୁଁ ବଞ୍ଚିଥିଲା ଯାକେ ଭୁଲି ପାରିବିନି । ଆପଦ ବିପଦରେ ମୁଁ ଯଦି ତୁମର କିଛି ଉପକାରରେ ଲାଗିପାରେ ବୋଲି ଭାବିବ, ତା'ହେଲେ ଏଇଠି ମୋତେ ଡାକ ପକେଇବ, ମୁଁ ସାଙ୍ଗେ ସାଙ୍ଗେ ହାଜର ହୋଇଯିବି ।"

ଅନେକ ବର୍ଷ ବିତିଗଲା । ସାରସ ଓ ବାଳିଆ ମଧ୍ୟରେ ଦେଖାସାକ୍ଷାତ ହୋଇ ନ ଥିଲା । ଥରେ ଦେଶରେ ଅନାବୃଷ୍ଟି ଯୋଗୁଁ ଗାଡ଼ିଆ ପୋଖରୀ ଶୁଖିଗଲା । ସାରସକୁ ଆଗଭଳି ସହଜରେ ଆହାର ମିଳିଲାନି । ଠିକ୍ ସମୟରେ ଖାଦ୍ୟ ନଖାଇ ସିଏ ଦୁର୍ବଳ ହୋଇ ପଡ଼ିଲା । ଉଡ଼ିବାକୁ ବଳ ପାଇଲା ନାହିଁ । ସାତ ଦିନ ଉପାସ ରହିଲା ପରେ ଚାଲିବାକୁ ବି ତାର ବଳ ପାଇଲାନି । ବଞ୍ଚିବାର କିଛି ଉପାୟ ତାକୁ ଦେଖାଗଲାନି । ଅଚାନକ ତା'ର ରାଘବ ବାଳିଆ କଥା ମନେପଡ଼ିଗଲା । ଡେରି ନ କରି କଷ୍ଟେମଷ୍ଟେ ନଈକୂଳରେ ପହଞ୍ଚି ସାଙ୍ଗକୁ ଡାକ ପକେଇଲା । ଅନେକ ଡାକିଲା ପରେ ବାଳିଆ ପାଣି ଉପରେ ଭାସି ଉଠିଲା । ବାଳିଆକୁ ଦେଖୁ ଦେଖୁ ସାରସର ମନ ଖୁସିରେ ନାଚି ଉଠିଲା । ସିଏ ଆତୁର ହେଇ କହିଲା, "ସାଙ୍ଗ, ଦେଶରେ ଅନାବୃଷ୍ଟି ଯୋଗୁଁ ଗାଡ଼ିଆ, ପୋଖରି, ହ୍ରଦ ସବୁ ଶୁଖିଗଲାଣି । ଖାଇବା ପାଇଁ କେଉଁଠି କିଛି ମିଳୁନି । ସାତଦିନ ହେଲା ମୋ ପେଟକୁ କିଛି ଯାଇନି । ସାଙ୍ଗେ ସାଙ୍ଗେ କିଛି ନ ଖାଇଲେ ମୋ ପିଣ୍ଡରୁ ପ୍ରାଣ ଛାଡ଼ିଯିବ । ତୁମେ ତ ଗଭୀର ଜଳରେ ଶିକାର କରିବାରେ

ଧୂରନ୍ଧର। ମୋ ପାଇଁ କିଛି ମାଛ ଯୋଗାଡ଼ କରିଦିଅ, ନ ହେଲେ ଏଇଠି ଭୋକରେ ଛଟପଟ ହୋଇ ମରିଯିବି।''

ବାଳିଆ ଟିକେ ଗମ୍ଭୀର ହୋଇଯାଇ ସାରସକୁ ଚିହ୍ନି ନ ଥିବାର ଅଭିନୟ କରି କହିଲା, ''ସାରସ, ତୁମକୁ ତ ଏଇ ପ୍ରଥମଥର ମୁଁ ଦେଖୁଛି। ଭୋକ ବିକଳରେ କ'ଣ ଏତେ ବଡ଼ ଡାହା ମିଛ କହନ୍ତି। କେବେଠୁ ମୁଁ ତୁମର ସାଙ୍ଗ ହେଲି ? ତା'ଛଡ଼ା ମୁଁ ପାଖାପାଖି ବର୍ଷେ ହେଲା ଆମିଷ ଖାଇବା ଛାଡ଼ି ଦେଇଛି। ଭୋକ ହେଲେ ପାଣି ଭିତରେ ବଢୁଥିବା ଛୋଟ ଛୋଟ ଘାସ ଖାଇ ବଞ୍ଚିଛି। ତମ ପାଇଁ କ'ଣ ମୁଁ ଧର୍ମ ନଷ୍ଟ କରିବି ?'' ବାଳିଆର ମିଛ କଥା ଶୁଣି ସାରସର କାନମୁଣ୍ଡ ଗରମ ହୋଇଗଲା। ଭାଗ୍ୟକୁ ଆଦରି ନଈକୂଳରେ ମଉନ ହୋଇ ବସି ରହିଲା। ଧଳା ବଗଟିଏ ସାରସ ଓ ବାଳିଆର କଥାକୁ ଶୁଣୁଥିଲା। ବାଳିଆ ମିଛ କହୁଛି ବୋଲି ତାକୁ ବୁଝିବାକୁ ବାକି ରହିଲାନି। ସାରସର ଅବସ୍ଥା ଦେଖି ତା'ମନରେ ଦୟା ଆସିଲା। ନଈର ଗୋଟିଏ ଛୋଟ ଧାର ପାଖକୁ ତାକୁ ନେଇଗଲା। ସେଠି ଅଳ୍ପ ପାଣିରେ ପହଁରୁଥିବା ଛୋଟ ଛୋଟ ମାଛମାନଙ୍କୁ ଖାଇ ସାରସର ଜୀବନ ରହିଗଲା। ସେଇ ଦିନଠୁ ସାରସ ଶାଖା ନଈ କୂଳରେ ଥିବା ଗୋଟିଏ ଆମ୍ବଗଛର ଡାଳକୁ ନିଜର ଘର ବୋଲି ବାଛିନେଲା।

ଥରେ ରାଘବ ବାଳିଆ ମନ ଖୁସିରେ ନଈର ଗଭୀର ଜଳରେ ପହଁରୁଥିଲା। ତା'ଠାରୁ ଅଳ୍ପ କିଛି ଦୂରରେ କଉମାଛଟିଏ ଲାଞ୍ଜ ହଲେଇ ବେପରୁଆ ପହଁରୁଥିଲା। ଥରେ ଦି'ଥର ବାଳିଆ ତା'ଦେହରେ ଘସି ହୋଇଗଲା। ସମାନ୍ୟ କଉଟାର ବେଖାତିର ଭାବ ଦେଖି ବାଳିଆ ରାଗରେ ପାଚିଗଲା। ଆଗପଛ ନ ବିଚାରି ପାଟି ମେଲା କରି କଉଟାକୁ ଗୋଟାପଣେ ଗିଳିଦେଲା। ବାଳିଆର ପେଟ ଭିତରେ ରହି କଉମାଛ ଅଣନିଶ୍ୱାସୀ ହୋଇପଡ଼ିଲା ଓ ବାହାରକୁ ଯିବା ପାଇଁ ଛଟପଟ ହେଲା। ତା'ପିଠିର ମୁନିଆଁ କଣ୍ଟା ଓ ଗାଲିସି ଉପରେ ଥିବା ଧାରୁଆ ହାଡ଼ ବାଜି ବାଳିଆର ପେଟ ଭିତରଟା ଖଣ୍ଡିଆ ଖାବରା ହୋଇଗଲା। ସିଏ କଷ୍ଟରେ ଚିତ୍କାର ଛାଡ଼ିଲା ଓ ସାହାଯ୍ୟ ପାଇଁ ଡାକ ପକେଇଲା। ହେଲେ ତା'ଡାକ ଶୁଣି କେହି ଆସିଲେନି। ସାରସ କାନରେ ବାଳିଆର ଡାକ ବାଜିଲା। ସିଏ ଧାଇଁଆସି ଦେଖିଲା ବାଳିଆ ଛଟପଟ ହେଉଛି। ସାରସକୁ ଦେଖି ବାଳିଆ କହିଲା, ''ସାଙ୍ଗ ! ରାଗରେ ଅନ୍ଧ ହୋଇ କଉମାଛଟିଏ ଗିଳିଦେଲି। ଏବେ ତାର କଣ୍ଟା ବାଜି ମୋ ପେଟ ଭିତରଟା ଖଣ୍ଡିଆଖାବରା ହେଇଗଲାଣି। ମୁଁ ଆଉ କଷ୍ଟ ସହି ପାରୁନି। ଆଗରୁ ବିପଦବେଳେ ତୁମକୁ ଚିହ୍ନି ନ ଥିବାର ବାହାନା କରିଥିଲି। ସେ ଭୁଲ୍ ପାଇଁ ମୋତେ କ୍ଷମା କରିଦିଅ। ମୋତେ ଏଇଥରକ ବଞ୍ଚେଇଦିଅ।''

ପଛକଥା ସବୁକୁ ଭୁଲି ସାରସ ବାଳିଆ ପେଟରୁ



କଉକୁ ବାହାର କରିବା ପାଇଁ ଆଗେଇଗଲା । ଏକଗୋଡ଼ିଆ ଠିଆ ହୋଇ ମାଛ ମାରୁଥିବା ବଗ ସାରସକୁ ବାରଣ କରି କହିଲା, "ଆଉଥରେ ଭୁଲ୍ କରନାହିଁ । ବାଳିଆ ସେମିତି ଛଟପଟ ହୋଇ ମରୁ । ଅନ୍ୟର ଉପକାରକୁ ଭୁଲିଗଲେ କି ଦଶା ଭୋଗ କରିବାକୁ ହୁଏ ସେ ବୁଝୁ ।" ସାରସ ବୁଝେଇ କହିଲା, "ବଗଭାଇ ! ବାଳିଆ ଯେଉଁ ଭୁଲ୍ କରିଥିଲା, ମୁଁ ସେଇ ଭୁଲ୍ କରିବାଟା କ'ଣ ଠିକ୍ ହେବ ? ତା'ହେଲେ ସିଏ ଓ ମୋ ଭିତରେ ଫରକ ରହିଲା କେଉଁଠି ?" ବଗ ଆଉ କିଛି ନ କହି ଚୁପ୍ ରହିଲା । ସାରସ ତାର ଲମ୍ବା ମୁନିଆ ଥଣ୍ଟରେ ବାଳିଆ ପେଟରୁ କଉକୁ ବାହାର କରି ଆଣିଲା ।

*ନୂଆପଡ଼ା (ବାଲିସାହି), ମଧୁମାଡ଼ଣା, କଟକ- ୭୫୩୦୧୦*



ପ୍ରାତଃ ଭ୍ରମଣ ଗଲାବେଳେ ଦୁଇଜଣ ବ୍ୟକ୍ତି କଥା ହେଉଥିଲେ ।

ପ୍ରଥମ ବ୍ୟକ୍ତି- ମୋର ଚାରିପୁଅ ଘରେ ଅଛନ୍ତି । ପ୍ରଥମ ପୁଅ ଏମ୍.ବି.ଏ., ଦ୍ୱିତୀୟ ପୁଅ ଇଂଜିନିୟର, ତୃତୀୟ ପୁଅ ପିଏଚ୍.ଡି. କରିଛି ଆଉ ଚତୁର୍ଥ ପୁଅଟା ତ ଚୋରଟାଏ ।

ଦ୍ୱିତୀୟ ବ୍ୟକ୍ତି- ତିନିପୁଅ ଏତେ ଉଚ୍ଚଶିକ୍ଷିତ ଅଥଚ ସାନଟା ଚୋର ! ତାକୁ ଘରୁ ବାହାର କରିଦେଉନାହାନ୍ତି କାହିଁକି ?

ପ୍ରଥମ ବ୍ୟକ୍ତି- ସେଇ ତ କେବଳ ରୋଜଗାର କରୁଛି । ଅନ୍ୟ ସମସ୍ତେ ବେକାର ।



# ରାଜପ୍ରାସାଦରୁ କୁଡ଼ିଆ ପର୍ଯ୍ୟନ୍ତ

ଓଡ଼ିଶାର ଜଣେ ପୂର୍ବତନ ରାଜା ଏବେ ଦୈନିକ ତାଙ୍କର ଖୋରାକି ପାଇଁ ସେହି ଗ୍ରାମର ଗ୍ରାମବାସୀଙ୍କ ହାତକୁ ଚାହିଁ ରହିଛନ୍ତି ।

ତାଙ୍କୁ ଏବେ ୯୨ ବର୍ଷ । ତାଙ୍କର ଦୀର୍ଘ ନାମ ହେଲା-- ବ୍ରଜରାଜ କ୍ଷତ୍ରିୟ ବୀରବର ଛାମୁପତି ସିଂହ-ମହାପାତ୍ର । ସେ କଟକ ଜିଲ୍ଲା ଅନ୍ତର୍ଗତ ତିଗିରିଆର ପୂର୍ବତନ ରାଜା । ଏବେ ସେ ଗୋଟିଏ ମାଟିଘର, କେତୋଟି ପ୍ଲାଷ୍ଟିକ୍ ଚଉକିର ମାଲିକ । ଉପରଟି ଆଜବେଷ୍ଟସ୍ ଛାତ । ସେଥିରୁ ପାଣି ଗଳେ । ଏଥିପାଇଁ ତାଙ୍କ ଖଟ ଉପରେ ଏକ ତିରାପାଲ ଟଙ୍ଗାଯାଇଛି । କେତେକ ବହି, ଗୋଟିଏ ପ୍ଲାଷ୍ଟିକ୍ ସାଲାଇନ୍ ବୋତଲ, ଗୋଟିଏ ଟର୍ଚ୍ଚ, କଞ୍ଚା ବିଲାତି ବାଇଗଣ ଓ ଏଠିସେଠି ଅଳନ୍ଧୁରେ ଭର୍ତ୍ତି ।

ପରିବାରର ସ୍ନେହରୁ ବଞ୍ଚିତ ହୋଇ ସେ ବର୍ତ୍ତମାନ ଦରିଦ୍ର ଅବସ୍ଥାରେ କାଳାତିପାତ କରୁଛନ୍ତି । ତାଙ୍କ ଆଖି ଦୁଇଟିଯାକ ପରଳଗ୍ରସ୍ତ ଓ କାନକୁ ମଧ୍ୟ ଶୁଭୁନାହିଁ । ପୁରୁଣା ତିଗିରିଆ, ଯେଉଁଠି ସେ ୧୯୮୭ରୁ ବାସ କରୁଛନ୍ତି, ସେଠାରେ ବହୁତ କମ୍ ଲୋକ ଜାଣନ୍ତି-- ସେ ହେଉଛନ୍ତି ଏକମାତ୍ର ଜୀବିତ ରାଜା-- ୨୬ଜଣଙ୍କ ମଧ୍ୟରୁ, ଯେଉଁମାନେ ଭାରତ ସରକାରଙ୍କ ସହ ମିଳିତ ହେବାର ଏକ ରାଜିନାମା ସ୍ୱାକ୍ଷର କରିଥିଲେ । ତିଗିରିଆ ୨୬ଟି ରାଜ୍ୟ ମଧ୍ୟରୁ ସବୁଠାରୁ ଛୋଟ ଥିଲା । ଏହାର କ୍ଷେତ୍ରଫଳ ୧୧୯ ବର୍ଗ କିଲୋମିଟର ।

୧୯୭୦ରେ ତାଙ୍କ ରାଜପ୍ରାସାଦକୁ ଭାରତ ସରକାର ୭୫,୦୦୦ଟଙ୍କା ଦେଇ କିଣିନେଲେ। ବର୍ତ୍ତମାନ ସନ୍ନ୍ୟାସୀ ପାଲଟିଥିବା ରାଜା ତାଙ୍କ ପ୍ରଜାଙ୍କ ହାତକୁ ଚାହିଁ ରହିଛନ୍ତି ଖାଇବା ପାଇଁ। ଗ୍ରାମବାସୀ ପାଳି କରି ତାଙ୍କୁ ଖାଇବାକୁ ଦିଅନ୍ତି। "ସେ ବର୍ତ୍ତମାନ ଭୀଷଣ ଏକାକୀ।" ବୋଲି ଲଳିତକୃଷ୍ଣ ଦାସ, ପାଖ କଚେରିର ଜଣେ ଓକିଲ କହିଲେ।

"ସେ ଜଣେ ସ୍ୱଳ୍ପାହାରୀ" ବୋଲି ଧରଣୀଧର ରଣା, ଜଣେ ପାଖ ଗ୍ରାମବାସୀ ମତ ଦେଲେ। "ସକାଳ ଜଳଖିଆରେ କପେ ଚା' ଓ ବିସ୍କୁଟ୍, ଖରାବେଳେ ଭାତ, ଡାଲି ଓ ରାତିରେ କେବଳ ପଟେ ରୁଟି। ବେଳେବେଳେ କୁକୁଡ଼ା ମାଂସ ବି ଖାଇଥାନ୍ତି।" ବୋଲି ରଣାଙ୍କ ଝିଅ କହିଲେ।

ଲୁଙ୍ଗି, କୁର୍ତ୍ତା ଓ ଗୋଟିଏ ବଙ୍କୁଲି ବାଡ଼ି ଓ ଦାଢ଼ି ସହ ତାଙ୍କୁ ଦେଖିଲେ ଚିହ୍ନିବା କଷ୍ଟ ଯେ ସେ ଜଣେ ରାଜା ଥିଲେ।



"ସେ ୧୯୪୭ ଶେଷ ଯାଏଁ ରାଜ୍ୟର ମୁଖ୍ୟ ପ୍ରଶାସକ ଥିଲେ ଓ ତା'ପରେ ରାଜା ହେଲେ। ବର୍ତ୍ତମାନ ଜଣେ ସାଧାରଣ ଲୋକ"-- ଏହା ଜୟନ୍ତ ମର୍ଦ୍ଦରାଜ, ଯେ କି ନୀଳଗିରିର ପୂର୍ବତନ ରାଜା କହନ୍ତି।

୧୯୪୦ରେ ସେ ରାଜକୁମାର କଲେଜ, ରାୟପୁରରୁ ଡିପ୍ଲୋମା କରିଥିଲେ। ତାଙ୍କ ସ୍ତ୍ରୀଙ୍କ ନାମ ରାସମଞ୍ଜରୀ ଦେବୀ। ସେ ସୋନପୁରର ରାଜକୁମାରୀ ଥିଲେ। ତାଙ୍କର ତିନିଟି ପୁଅ।

ରାଜା କୁହନ୍ତି, "ମୁଁ ସେତେବେଳେ ପ୍ରାୟତଃ କଲିକତା ଯାଉଥିଲି। ମୋର ସାଙ୍ଗ ପୁରୀର ପୂର୍ବତନ ରାଜା ମୋ ସାଙ୍ଗରେ ଥାଆନ୍ତି। ଆମେ ମାଜେଷ୍ଟିକ୍ ଓ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲରେ ରହୁ। ମନଇଚ୍ଛା ପିଉ। ମୁଁ ବ୍ଲାକ୍ ଲେବଲ୍ ଓ ହ୍ୱାଇଟ୍ ଲେବଲ୍‌କୁ ପସନ୍ଦ କରେ। ୯୯୯ ଓ ଷ୍ଟେଟ୍ ଏକ୍ସପ୍ରେସ୍ ସିଗାରେଟ୍‌କୁ ମୋର ପସନ୍ଦ। ଯଦି ଏକ ନୂଆ କାର୍ ବଜାରକୁ ଆସିଲା, ତେବେ ମୁଁ ତାକୁ ନିଶ୍ଚୟ କିଣିବି। ମୋର ୨୫ଟି କାର୍ ଓ ଜିପ୍ ଥିଲା। ସେଥିରେ ଏକ ରୋଡ୍‌ମାଷ୍ଟର, ଚେଭୋରଲେଟ୍ ଓ ପ୍ଲାକାର୍ଡ ଅନ୍ତର୍ଭୁକ୍ତ। ୩୦ଜଣ ଚାକର ମୋ' ସେବା କରୁଥିଲେ।" ଏହିପରି ପୁରୁଣା ସ୍ମୃତିମନ୍ଥନ କରନ୍ତି ମହାପାତ୍ର।

ସେ ଜଣେ ଭଲ ଶିକାରୀ ଥିଲେ। ୧୩ଟି ବାଘ, ୨୮ଟି ଚିତାବାଘ ଓ ଗୋଟିଏ ଦନ୍ତାହାତୀ ସେ ଶିକାର କରିଥିଲେ। "ମୁଁ ହାତୀକୁ ମାରିବା ସପକ୍ଷରେ ନ ଥିଲି,

ଗ୍ରାମବାସୀ ମୋତେ ବାଧ୍ୟ କଲେ, କାରଣ ସେ ତାଙ୍କର ଫସଲ ନଷ୍ଟ କରୁଥିଲା।'' ରାଜା କୁହନ୍ତି। ମର୍ଦ୍ଦରାଜ କୁହନ୍ତି, ''ସେ ଜଣେ କ୍ଷୁଦ୍ରଗଳ୍ପ ଲେଖକ ଓ ଚିତ୍ରକର ମଧ୍ୟ।''

ସେ ୧୯୪୮ରେ ତାଙ୍କ ରାଜ୍ୟକୁ ଭାରତ ସହ ମିଶାଇଦେବା ପରେ ବର୍ଷକୁ ୧୧,୨୦୦ଟଙ୍କାର ଏକ ହାତପାଣି ପାଉଥିଲେ। ଇନ୍ଦିରା ଗାନ୍ଧୀ ତା' ବି ୧୯୭୫ରେ ବନ୍ଦ କରିଦେଲେ। ଏହା ପୂର୍ବରୁ ସେ ନିଜ ରାଜପ୍ରାସାଦକୁ ତିଗିରିଆରେ ବିକ୍ରି କରି ନିଜ ସ୍ତ୍ରୀଙ୍କଠାରୁ ଅଲଗା ହୋଇଯାଇଥିଲେ।

ବିକ୍ରି ସରିବା ପରେ ସେ ପୁରୀ ଗଜପତିଙ୍କ ସହ ଦୀର୍ଘ ୧୨ ବର୍ଷ କାଳ ରହିଲେ। ତା'ପରେ ନିଜ ବଡ଼ଭାଇଙ୍କ ସହ ରହିଲେ। ତାଙ୍କ ବଡ଼ଭାଇ ଆନ୍ଧ୍ରପ୍ରଦେଶର ଏକ ରାଜ୍ୟ ମାଣ୍ଡାସାର ରାଜା ଥିଲେ। ୧୯୮୭ରେ ସେ ତିଗିରିଆ ଫେରିଆସି ଏକ କୁଡ଼ିଆ ନିର୍ମାଣ କଲେ ଓ ସେଠାରେ ବର୍ତ୍ତମାନ ବସବାସ କରୁଛନ୍ତି। ତାଙ୍କ ସ୍ତ୍ରୀ ତିଗିରିଆର ପୂର୍ବତନ ଏମ୍.ଏଲ୍.ଏ। ସେ ତାଙ୍କ ସ୍ୱାମୀଙ୍କ କୁଡ଼ିଆଠାରୁ ମାତ୍ର ୧ କି.ମି ଦୂରରେ ଅଛନ୍ତି। ଦୁଇଜଣଙ୍କ ମଧ୍ୟରେ ଗତ କେତେ ଦଶନ୍ଧି ଧରି ଦେଖାସାକ୍ଷାତ ହୋଇନାହିଁ।

ଯେବେ ରାଜ୍ୟ ମିଶ୍ରଣ ହୋଇଥିଲା, ସେ କଥା ମନେପକାଇ ରାଜା କୁହନ୍ତି, ''ମୁଁ କଟକର ଟାଉନ୍‌ହଲ୍‌ରେ ଏହି ରାଜିନାମା ସ୍ୱାକ୍ଷର ହେବ ବୋଲି ସେଠାକୁ ଗଲି ଓ ସାଙ୍ଗରେ ମୋ ଦିୱାନ୍ ଉଦୟନାଥ ସାହୁ ବାହାରେ ଅପେକ୍ଷାରତ ଥା'ନ୍ତି।

ସର୍ଦ୍ଦାର ପଟେଲ୍ ଆମକୁ ଏକ ଚରମପତ୍ର ଦେଲେ। ରଣପୁରର ରାଜା ସ୍ୱାକ୍ଷର କରିବାକୁ ଅସମ୍ମତ ହେବାରୁ ସର୍ଦ୍ଦାର ପଟେଲ୍ ଭାରତୀୟ ସ୍ଥଳସେନାକୁ ପଠେଇବାକୁ ଧମକ ଦେଲେ।'' ସେ କୁହନ୍ତି।

ପୂର୍ବତନ ମୁଖ୍ୟମନ୍ତ୍ରୀ ୰ବିଜୁପଟ୍ଟନାୟକ ତାଙ୍କୁ ରାଜନୀତିରେ ପ୍ରବେଶ କରିବାକୁ କହିଲେ, କିନ୍ତୁ ସେ ତା' କଲେନାହିଁ। କାରଣରେ ସେ କୁହନ୍ତି ଯେ-- ସେ ଲୋକଙ୍କ ପାଖରେ ମୁଣ୍ଡ ନୁଆଁଇବା ଜାଣନ୍ତି ନାହିଁ।

ସେ ତାଙ୍କ ରାଜ୍ୟ, ରାଜପ୍ରାସାଦ ଓ ଧନରତ୍ନ ହରାଇବା ଯୋଗୁଁ ଅନୁତପ୍ତ କି ବୋଲି ପଚାରିବାରୁ ସେ କୁହନ୍ତି, ''ସେତେବେଳେ ମୁଁ ରାଜା ଥିଲି, ବର୍ତ୍ତମାନ ମୁଁ ଜଣେ କାଙ୍ଗାଳ। କିନ୍ତୁ ମୋର ସେପରି କିଛି ଅନୁଶୋଚନା ନାହିଁ। ଯାହା ବି ହେଉ, ଯଦି ସେପରି କିଛି ଅନୁଶୋଚନା ଥାଆନ୍ତା, ତେବେ ମୁଁ ଏତେ ବର୍ଷ ଧରି ବଞ୍ଚି ରହି ଥାଆନ୍ତି କି ?''

ତାଙ୍କର ନଅରରେ ଏବେ ତରବାରି ନାହିଁ କି ତରବାରିର ଝଙ୍କାର ଶୁଭୁନାହିଁ। କାନ୍ଥରେ ତାଙ୍କର କୌଣସି ଟ୍ରଫି ଝୁଲୁନାହିଁ, ଯାହାକି ତାଙ୍କର ରାଜତ୍ୱ ସମୟରେ ସେ କରିଥିବା ଶିକାରସବୁର ସ୍ମାରକୀସ୍ୱରୂପ ଝୁଲୁଥିଲା। କାନ୍ଥରେ ବି କୌଣସି ହଳଦିଆ ପଡ଼ିଯାଇଥିବା ତୈଳଚିତ୍ର ଝୁଲୁନାହିଁ, ଯାହା ତାଙ୍କର ଯୁବକ ସମୟର ବୀରତ୍ୱର ସ୍ମୃତିଚାରଣ କରୁଥାନ୍ତା। ତାଙ୍କର ନଅର, ଯେଉଁଥିରେ କି ସେ ସ୍ତ୍ରୀ ଓ ପିଲାଙ୍କ ସହ ୧୯୬୦ ପର୍ଯ୍ୟନ୍ତ ରହୁଥିଲେ, ତାହା ବର୍ତ୍ତମାନ ଏକ ବାଳିକା ବିଦ୍ୟାଳୟ। (ଅନୁବାଦ-ସତ୍ୟନାରାୟଣ ମହାପାତ୍ର)

## ମନେପକାଇଦେବା ପାଇଁ

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଗିରିଶ | ଗିରୀଶ | ରଶ୍ମୀ | ରଶ୍ମି |
| ଗୋଲକଚନ୍ଦ୍ର | ଗୋଲୋକଚନ୍ଦ୍ର | ସୌମେନ୍ଦ୍ର | ସୌମ୍ୟେନ୍ଦ୍ର |

# କିଏ ସେ ହେବ କ୍ରିକେଟ ରାଜା

ଶ୍ରୀ କୁଞ୍ଜ ବିହାରୀ ଜେନା

କ୍ରିକେଟ ସମ୍ରାଟ କାହାକୁ କୁହନ୍ତି
ଜାଣିଛ କି ପିଲେ ତୁମେ ?
ସମ୍ରାଟଙ୍କ ପତ୍ନୀ କେଉଁ ଦେଶ ଝିଅ
ଚାଲ ବୁଲିଯିବା ଆମେ ।
ପଚାଶ ଓଭର ବିଶ୍ୱକପ୍‌ଟିକୁ ।
କିଏ ନେଲା ଦୁଇଥର
ରାଷ୍ଟ୍ରଗୁଡ଼ିକର ନାମ କହିଦିଅ
ମନ କରି ତୁମେ ସ୍ଥିର ।
କ୍ରିକେଟ କ୍ରୀଡ଼ାର କେଉଁ ଦେଶେ ଜନ୍ମ
କିଏ ସେ କହିବ ଆଗ
ଖେଳୁଥିବାବେଳେ ନ କରିବ ଗୋଳ
ମନରେ ରଖିଣ ରାଗ ।
ଟ୍ୱଣ୍ଟି ବିଶ୍ୱକପ୍ ଅଷ୍ଟ୍ରେଲିଆ ଦେଶ
ପାଇଛି କି ନାହିଁ କୁହ
ସଠିକ୍ ଉତ୍ତର ଦେଇ ନ ପାରିଲେ
ପାଟି ଚୁପ୍ କରି ରୁହ ।
ଚମ୍ପିୟାନ୍ ଟ୍ରଫି ହେବ ନାହିଁ ଆଉ
ଶେଷ ଟ୍ରଫି କିଏ ନେଲା
ପୀଡ଼ିତ ଲୋକଙ୍କୁ କିଏ ସେ ଖେଳାଳି
ପୁରସ୍କାର ଅର୍ଥ ଦେଲା ?
ସବୁଠାରୁ ବେଶି ବିଶ୍ୱକପ୍ ଆଖ୍ୟା
କେଉଁ ଦେଶ ପାଏ କୁହ ?
ଯିଏ ସେ କହିବ ସୁନାପିଲା ହେବ
ଆନନ୍ଦ ମନରେ ରୁହ ।
କ୍ରିକେଟର ରାଜା ଉପାଧି ମିଳିବ
ଉତ୍ତର କହିଲେ ତୁମେ
ଯେତେ ଝଡ଼ଝଞ୍ଜା ଆସୁ ଏ ଜୀବନେ
କେବେ ହାରିବାନି ଆମେ ।

*ତିଅସାହିବୀର, ବାରେଡ଼ିଆ, ଅଣଖିଆ, ଜଗତସିଂହପୁର*

*(ଉତ୍ତର ଆସନ୍ତା ସଂଖ୍ୟାରେ)*

---

**ଅଛି-ନାହିଁ–** ନିମ୍ନ ଦୁଇଟି ଚିତ୍ରରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି, ବାହାର କରନ୍ତୁ ତ ।





(ଉତ୍ତର ୩୮ ପୃଷ୍ଠାରେ)

## ପୂରାତନ ଯୁଗର ଅସାମାନ୍ୟ ଭାରତୀୟଗଣ

### (ବରାହ ମିହିର, ଖ୍ରୀ.ପୂ- ୪୯୯-୫୮୭)

### ପ୍ରଖ୍ୟାତ ଜ୍ୟୋତିଷ ଓ ମହାକାଶବିଦ୍




ଅବନ୍ତୀର ଉଜ୍ଜୟିନୀରେ ବିକ୍ରମାଦିତ୍ୟଙ୍କ ସଭାରେ ଥିବା ନଅଜଣ ରତ୍ନଙ୍କ ମଧ୍ୟରୁ ବରାହ ମିହିର ଅନ୍ୟତମ । ମହାକାଶ ବିଜ୍ଞାନରେ ବରାହ ମିହିରଙ୍କର 'ପଞ୍ଚ ସିଦ୍ଧାନ୍ତ' ଅତ୍ୟନ୍ତ ଉପଯୋଗୀ ପୁସ୍ତକ ଭାବରେ ଗଣାଯାଏ ।

ଚନ୍ଦ୍ର ଓ ଅନ୍ୟାନ୍ୟ ଗ୍ରହ ସବୁ ନିଜର ଆଲୋକରେ ନୁହେଁ, ସୂର୍ଯ୍ୟର ଆଲୋକରେ ଆଲୋକିତ ବୋଲି ସେ ପ୍ରଥମେ ଦୁନିଆକୁ ଜଣାଇଦେଇଥିଲେ । 'ବୃହଦ୍ ସଂହିତା' ଓ 'ବୃହଦ୍ ଜାତକ'ରେ ସେ ଭୂଗୋଳ, ନକ୍ଷତ୍ରପୁଞ୍ଜ, ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ଓ ପ୍ରାଣୀଜଗତ ବିଷୟରେ ଲେଖିଛନ୍ତି । ଉଦ୍ଭିଦ ବିଜ୍ଞାନ ଗ୍ରନ୍ଥରେ ସେ ବୃକ୍ଷଲତାର ବିଭିନ୍ନ ରୋଗ ଓ ତା'ର ନିରାକରଣର ଉପାୟ ବତାଇ ଦେଇଛନ୍ତି । ଏହି ଋଷି-ବିଜ୍ଞାନୀଙ୍କର ବିଜ୍ଞାନ, ଜ୍ୟୋତିଷଶାସ୍ତ୍ର, ଓ ମହାକାଶ ବିଜ୍ଞାନକୁ ଅତୁଳନୀୟ ଦାନରେ ମାନବ ସମାଜ ଗର୍ବିତ ।

### (ନାଗାର୍ଜୁନ, ଖ୍ରୀ.ପୂ- ୧୦୦)

### ରସାୟନ ବିଜ୍ଞାନର ଯାଦୁକର

ନାଗାର୍ଜୁନ ବିଜ୍ଞାନର ଜଣେ ଅସାଧାରଣ ଯାଦୁକର ଥିଲେ । ମଧ୍ୟପ୍ରଦେଶର ଏକ ଅନାମଧେୟ ଗ୍ରାମ, ବାଲୁକାରେ ସେ ଜନ୍ମ ନେଇଥିଲେ । ତାଙ୍କର ଦୀର୍ଘ ବାର ବର୍ଷର ଉତ୍ସର୍ଗୀକୃତ ଗବେଷଣାରୁ ରସାୟନ ଶାସ୍ତ୍ରରେ ଅନେକ ଅନାବିଷ୍କୃତ ତଥ୍ୟ ବାହାରିଥିଲା ।

'ରସ ରତ୍ନାକର', 'ରଶ୍ରୁଦୟ' ଓ 'ରସେନ୍ଦ୍ର ମଙ୍ଗଳ' ହେଲା ତାଙ୍କର ଲବ୍ଧପ୍ରତିଷ୍ଠ ସନ୍ଦର୍ଭ । ଏହିସବୁ ଲେଖା ତାଙ୍କର ରସାୟନ ଶାସ୍ତ୍ରକୁ ଅନବଦ୍ୟ ଦାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ସେତେବେଳର ଇଂଲଣ୍ଡର ଅପ-ରସାୟନବିତ୍-ମାନେ ଅସଫଳ ହେବା ସମୟରେ ନାଗାର୍ଜୁନ ମୌଳିକ ଧାତୁକୁ କିପରି ସୁନାରେ ରୂପାନ୍ତରିତ କରିହେବ, ତା'ର କୌଶଳ ବାହାର କରିଥିଲେ । ସେ 'ଆରୋଗ୍ୟ ମଞ୍ଜରୀ', 'ଯୋଗସାର' ଆଦି ଚିକିତ୍ସାଶାସ୍ତ୍ର ଲେଖିଥିଲେ । ସେ ଆହୁରି ଅନେକ ଲେଖାରେ ଚିକିତ୍ସା ବିଦ୍ୟାର ନିରାକରଣ ପଦ୍ଧତି ସମ୍ପର୍କୀୟ ଅଗାଧ ତଥ୍ୟ



ଆମମାନଙ୍କୁ ଦେଇଛନ୍ତି । ତାଙ୍କର ଅସୀମ ବିଦ୍‌ବତ୍ତା ଓ ଅପରିସୀମ ଜ୍ଞାନ ପାଇଁ ସେ ନାଳନ୍ଦା ବିଶ୍ୱବିଦ୍ୟାଳୟର କୁଳପତି ନିଯୁକ୍ତ ହୋଇଥିଲେ ।

ଆଜି ଯାଏଁ ମଧ୍ୟ ବିଂଶ ଶତାବ୍ଦୀର ବୈଜ୍ଞାନିକଗଣ ନାଗାର୍ଜୁନଙ୍କର ଆବିଷ୍କାରଗୁଡ଼ିକରେ ଚମତ୍କୃତ ଓ ପ୍ରଭାବିତ ହୋଇ ଚାଲିଛନ୍ତି ।

## (ଆଚାର୍ଯ୍ୟ ଭରଦ୍ୱାଜ, ଖ୍ରୀ.ପୂ- ୮୦୦)

## ଉଡ୍ଡୟନ ବିଦ୍ୟାର ଜନକ




ଭରଦ୍ୱାଜ ଋଷିଙ୍କର ପ୍ରୟାଗରେ ଏକ ଆଶ୍ରମ ଥିଲା । ସେ ଆୟୁର୍ବେଦ ଓ ଯାନ୍ତ୍ରିକ ବିଜ୍ଞାନର ଜନକ । 'ଯନ୍ତ୍ରସର୍ବସ୍ୱ'ରେ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଉଡ୍ଡୟନ ବିଜ୍ଞାନ, ମହାକାଶ ବିଜ୍ଞାନ, ଓ ଉଡ୍ଡୟନ ଯାନ ବିଷୟରେ ଅନେକ ତଥ୍ୟପୂର୍ଣ୍ଣ ବିଷୟ ସେ ଲେଖିଛନ୍ତି । ଯାନଗୁଡ଼ିକର ବିଭାଗୀକରଣରେ--

୧) ପୃଥିବୀପୃଷ୍ଠରେ ଏ ସ୍ଥାନରୁ ସେ ସ୍ଥାନକୁ ଯିବା ଲାଗି ।
୨) ଗୋଟିଏ ଗ୍ରହରୁ ଅନ୍ୟ ଗ୍ରହକୁ ଯିବା ଲାଗି ।
୩) ଗୋଟିଏ ବିଶ୍ୱରୁ ଅନ୍ୟ ବିଶ୍ୱକୁ ଯିବା ଲାଗି ।

ଏହି ଉପରୋକ୍ତ ଶ୍ରେଣୀବିଭାଗ ଦ୍ୱାରା ସେ ଯାନଗୁଡ଼ିକ କରିଛନ୍ତି । ସେ ଏଥିରେ ନକ୍ସା ଓ ସମ୍ପୂର୍ଣ୍ଣ ଶ୍ରେଣୀବିଭାଗ ଦେଇଛନ୍ତି । ଏବର ବୈଜ୍ଞାନିକମାନେ ଏହି ନକ୍ସା ଓ ତଥ୍ୟ ଦେଖି ଚମତ୍କୃତ ହେଉଛନ୍ତି । ତାଙ୍କର ସେ ସମୟରେ ମଧ୍ୟ ଏହି ବିଷୟରେ କିପରି ଜ୍ଞାନ ଥିଲା, ତାହା ଭାବିଲେ ଆଶ୍ଚର୍ଯ୍ୟ ନ ହୋଇ ରହି ହେବନାହିଁ ।

ଗମ୍ଭୀର ଗୋପନୀୟତା କ୍ରମରେ ତାଙ୍କର ବିଭାଗୀକରଣ ଏହିପରି--

୧) ଗୋଟିଏ ବ୍ୟୋମଯାନକୁ ସୂର୍ଯ୍ୟରଶ୍ମି ଓ ବାୟୁର ଶକ୍ତି ବଳରେ ଅଦୃଶ୍ୟ କରିବା ।
୨) ସାଧାରଣ ଗୋପନୀୟତା-- ବିଦ୍ୟୁତଶକ୍ତିର ଉପଯୋଗ କରି ଗୋଟିଏ ଯାନକୁ ଦୃଶ୍ୟମାନ କରିବା ।
୩) ଚୋରାରେ କଥା ଶୁଣିବାର ଗୋପନୀୟତା-- ଗୋଟିଏ ବ୍ୟୋମଯାନର ଭିତର ଲୋକଙ୍କର କଥା ଅନ୍ୟ ଏକ ଯାନରେ ଶୁଣିପାରିବା ।
୪) ଚୋରାରେ ଗୋଟିଏ ବ୍ୟୋମଯାନର ଦୃଶ୍ୟ ଅନ୍ୟ ବ୍ୟୋମଯାନରେ ଦେଖିବା ।

ହଜାର ହଜାର ବର୍ଷ ବିତିଗଲେ ମଧ୍ୟ ସେ ମାନବ ସମାଜର ସ୍ମୃତିରେ ଅବସ୍ଥାନ କରୁଛନ୍ତି ଓ ତାଙ୍କ ତଥ୍ୟପୂର୍ଣ୍ଣ ଲେଖା ଆଜି ମଧ୍ୟ ବୈଜ୍ଞାନିକମାନଙ୍କର ଶରୀର ରୋମାଞ୍ଚିତ କରିଦେଉଛି । ସେ ଅସାମାନ୍ୟ ଭାରତୀୟମାନଙ୍କ ମଧ୍ୟରୁ ଜଣେ ।

## (ଆଚାର୍ଯ୍ୟ କନ୍ନଡ୍, ଖ୍ରୀ.ପୂ- ୬୦୦)

## ପରମାଣୁର ଉଦ୍ଭାବକ

ତାଙ୍କର ଛଅଗୋଟି ଦର୍ଶନଶାସ୍ତ୍ର ଲେଖା ମଧ୍ୟରୁ 'ବୈଷୟିକ ଦର୍ଶନ' ଗୋଟିଏ । ସେ ଦର୍ଶନଶାସ୍ତ୍ରର ଜଣେ ରତ୍ନ କହିଲେ ଅତ୍ୟୁକ୍ତି ହେବନାହିଁ ।




ଗୁଜୁରାଟର ପ୍ରଭାସ କ୍ଷେତ୍ରରେ ତାଙ୍କର ଜନ୍ମ ବୋଲି ବିଶ୍ୱାସ । ବାସ୍ତବବାଦ, କାରଣ ତତ୍ତ୍ୱ ଓ ପରମାଣୁ ବିଜ୍ଞାନର ସେ ଜଣେ ଅଗ୍ରଣୀ ବ୍ୟାଖ୍ୟାକାର । ସେ ସୃଷ୍ଟିର ପ୍ରତ୍ୟେକ ବସ୍ତୁକୁ ନଅଟି ବିଭାଗରେ ବିଭାଗୀକରଣ କରିଥିଲେ । ତାହା ହେଲା ମାଟି, ଜଳ, ଆଲୋକ, ବାୟୁ, ଶୂନ୍ୟ, ସମୟ, ସ୍ଥାନ, ମନ ଓ ଆତ୍ମା ।

"ଏହି ସୃଷ୍ଟିର ପ୍ରତ୍ୟେକ ବସ୍ତୁ ପରମାଣୁ ଦ୍ୱାରା ଗଠିତ ଓ ଏହା ପରସ୍ପର ସହିତ ସଂଲଗ୍ନ ହୋଇ ଅଣୁ ସୃଷ୍ଟି କରିଥାଏ"- ତାଙ୍କର ଏହି ଉପରୋକ୍ତ ତାତ୍ତ୍ୱିକ ଉକ୍ତି ଜନ୍ ଡାଲ୍‌ଟନ୍‌ଙ୍କ ବାହାର କରିଥିବା ସିଦ୍ଧାନ୍ତ ପହଞ୍ଚିବା ସମୟର ୨୫୦୦ ବର୍ଷ ପୂର୍ବରୁ ପରମାଣୁ ବିଜ୍ଞାନର ମୂଳତତ୍ତ୍ୱ ହିସାବରେ ଗୃହୀତ ହୋଇଥିଲା । କନ୍ନଡ୍ ମଧ୍ୟ ପରମାଣୁର ଆକାର, ଗତି, ପରସ୍ପର ସହିତ ରାସାୟନିକ ପ୍ରକ୍ରିୟା ବିଷୟରେ ବିସ୍ତୃତ ଅଜଣା ତଥ୍ୟ ମାନବ ସମାଜକୁ ଦେଇଯାଇଛନ୍ତି ।

ପ୍ରସିଦ୍ଧ ଇତିହାସକାର ଟି.ଏନ୍ କୋଲ୍‌ବ୍ରୁକ୍ କହିଛନ୍ତି, "ପାଶ୍ଚାତ୍ୟ ଜଗତର ବୈଜ୍ଞାନିକମାନଙ୍କ ତୁଳନାରେ ଓ ତାଙ୍କର ସମକାଳୀନ ଭାରତୀୟ ବୈଜ୍ଞାନିକମାନେ ଯେ ବିଜ୍ଞାନ ଯୁଗର ସର୍ବୋତ୍କୃଷ୍ଟ ବୈଜ୍ଞାନିକ ଥିଲେ-- ଏଥିରେ ଅତ୍ୟୁକ୍ତି ନାହିଁ ।"

## (ଆର୍ଯ୍ୟଭଟ୍ଟ, ଖ୍ରୀ.ପୂ- ୬୦୦)

### ସେ ଖ୍ରୀ.ପୂ ୪୭୬ ସମୟର ସର୍ବଶ୍ରେଷ୍ଠ ମହାକାଶ ବିଜ୍ଞାନୀ ଏବଂ ଗାଣିତଜ୍ଞ ।

ସେ ବିହାରର କୁସୁମପୁରରେ ଜନ୍ମଗ୍ରହଣ କରିଥିଲେ । ସେତେବେଳର ଗ୍ରହବିଜ୍ଞାନ ଓ ଗଣିତର ସୀମାକୁ ବିସ୍ତୃତ ଓ ପ୍ରାଞ୍ଜଳ ଭାବରେ ଆମ ସମ୍ମୁଖରେ ଉପସ୍ଥାପନ କରିଥିଲେ । ମାତ୍ର ୨୩ ବର୍ଷ ବୟସରେ ସେ ମହାକାଶ ବିଜ୍ଞାନ ବିଷୟରେ ଏକ ସନ୍ଦର୍ଭ ଲେଖିଥିଲେ, ଯାହାକି 'ଆର୍ଯ୍ୟଭଟ୍ଟମ୍' ନାମରେ ଖ୍ୟାତ । ନକ୍ଷତ୍ର ଓ ଗ୍ରହଗୁଡ଼ିକର ଗତି କିପରି ନିର୍ଦ୍ଧାରଣ କରିବ ଓ ପରାଗ ତଥା ଗ୍ରହଣର ଦିନ କିପରି ଜାଣିବ, ତାହା ସେ ଆମ ସମ୍ମୁଖରେ ରଖିଦେଇ ଯାଇଛନ୍ତି । ପୃଥିବୀ ଯେ ଗୋଲାକାର ଏବଂ ନିଜ କକ୍ଷରେ ବୁଲିବା ସହିତ ସୂର୍ଯ୍ୟଙ୍କୁ ମଧ୍ୟ ପ୍ରଦକ୍ଷିଣ କରୁଥାଏ, ଏହା ମଧ୍ୟ ସେ ପ୍ରମାଣିତ କରିଥିଲେ । କୋପରନିକସଙ୍କର ୧୦୦୦ ବର୍ଷ ପୂର୍ବରୁ ସେ ସୂର୍ଯ୍ୟଙ୍କୁ ମୂଳଉତ୍ସ ଭାବରେ ନିଜର ସିଦ୍ଧାନ୍ତ ବାହାର କରିଥିଲେ ।



ସେ ଗଣିତରେ ପାଇର ଚତୁର୍ଥ ବର୍ଗ ଯାଏଁ ହିସାବ ବାହାର କରିଥିଲେ ଓ ଏହା ହେଲା ୩.୧୪୧୬। ତ୍ରିକୋଣମିତିରେ ସିନେର ସାରଣୀ ମଧ୍ୟ ପ୍ରକାଶ କରିଥିଲେ। ମହମ୍ମଦ ଇବନ ମୁଷା ଏହି ପାଇର ହିସାବର କୃତିତ୍ୱ ଭାରତୀୟଙ୍କୁ ଦେଇ କହନ୍ତି, "ହିନ୍ଦୁମାନେ ଏହି ଗାଣିତିକ ତଥ୍ୟ ମାନବ ସମାଜକୁ ଦେଇଛନ୍ତି ।" ଆର୍ଯ୍ୟଭଟ୍ଟଙ୍କର ସବୁଠାରୁ ବଡ଼ ଦାନ ହେଲା-- ଶୂନ୍ୟର ମୂଲ୍ୟ ନିର୍ଦ୍ଧାରଣ। ଏହା ସେ କରି ନ ଥିଲେ ଆଜି କମ୍ପ୍ୟୁଟର ବୋଲି କିଛି ନ ଥା'ନ୍ତା। ସେତେବେଳର ସେ ଅପ୍ରତିଦ୍ୱନ୍ଦ୍ୱୀ ଗଣିତଜ୍ଞ ଥିଲେ।





ପୃଥିବୀର ସବୁଠାରୁ ବଡ଼ ହୋଟେଲ- ଜେଣ୍ଟିଂ ହାଇଲ୍ୟାଣ୍ଡ ରିସର୍ଟ। ଏହି ହୋଟେଲ୍‌ଟି ମାଲେସିଆର ପାହଙ୍ଗ ଦାରୁଲ୍ ମକ୍‌ମୁର୍ ଠାରେ ଅବସ୍ଥିତ । ଏଥିରେ ୬,୦୦୦ କୋଠରି ସହିତ ହୋଟେଲର ଅତିଥିମାନଙ୍କ ପାଇଁ ୧୦ଟି ରେସ୍ତୋରାଁ ରହିଛି ।

← ଚିତ୍ରକୁ ନିରୀକ୍ଷଣ କରନ୍ତୁ । ତଳ ଅଧା ଅଂଶକୁ କାଗଜରେ ଘୋଡ଼ାଇ ଦେଖନ୍ତୁ -- ୧୦ଟି ଚାରିକଣିଆ ବାଡ଼ି ଅଛି । ସେହିପରି ଉପର ଅଧା ଅଂଶକୁ ଘୋଡ଼ାଇ ଦେଖନ୍ତୁ -- ଦେଖିବେ ୭ଟି ଚାରିକଣିଆ ବାଡ଼ି ଅଛି। କିନ୍ତୁ ଏହା କ'ଣ ସତ୍ୟ ? କିପରି ହେଉଛି ? ସେହିପରି ଏପଟ କଡ଼ ଚିତ୍ରଟିକୁ ମଧ୍ୟ ଦେଖନ୍ତୁ ।

# ଆଉ କେତେଜଣଙ୍କୁ ବଞ୍ଚେଇ ପାରିଥାନ୍ତି ହେଲେ......

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

୧୯୮୮ ମସିହା ଜୁଲାଇ ୮ ତାରିଖ। ମୌସୁମୀ ବର୍ଷା ଆରମ୍ଭ ହୋଇ ସାରିଥାଏ। ତୁମୁଳ ବର୍ଷା ଭିତରେ ଛୁଟି ଚାଲିଥାଏ ଥାଇଲାଣ୍ଡ୍ ଏକ୍ସପ୍ରେସ୍ ଟ୍ରେନ୍। ଗନ୍ତବ୍ୟ ସ୍ଥାନ କନ୍ୟାକୁମାରୀ । କିନ୍ତୁ କି ଦୁର୍ଯୋଗରେ ଟ୍ରେନ୍‌ଟି ବହାରିଥିଲା କେଜାଣି, ପେରୁମାନ୍ ପୋଲ ଉପରେ ଧାଉଁଥିବା ବେଳେ ତାହା ଲାଇନଚ୍ୟୁତ ହୋଇଗଲା। ଲାଇନଚ୍ୟୁତ ହୋଇ ଟ୍ରେନ୍‌ଟିର ଦଶଟି ବଗି ଖସି ପଡ଼ିଲା ପୋଲ ତଳର ଅଷ୍ଟମୁଦି ହ୍ରଦ ଭିତରକୁ। କେତେକ ବଗି ଜଳରେ ପୂରା ବୁଡ଼ିଗଲା ଓ ଆଉ କେତୋଟି ରହିଗଲା ଅଧା ବୁଡ଼ିବା ଅବସ୍ଥାରେ।

କେ.ଜେ. ଥୋମାସ୍ ଯେଉଁ ବଗିରେ ଯାତ୍ରା କରୁଥିଲେ, ସେହି ବଗିଟି ମଧ୍ୟ ଖସି ପଡ଼ିଥିଲା ଜଳଭରା ହ୍ରଦଟି ଭିତରକୁ।

ଥୋମାସ କହନ୍ତି, "ଆମ ବଗିଟା ହ୍ରଦ ଭିତରକୁ ପଡ଼ିଯାଇଥିଲେ ମଧ୍ୟ ତାହା ପଡ଼ିଥିଲା କୂଳଠାରୁ ଅଳ୍ପ



ଦୂରରେ। କିନ୍ତୁ ତାହା ଏପରି ଭାବରେ ପଡ଼ିଥିଲା ଯେ ବଗିଟିର ଯିବାଆସିବା ଦ୍ୱାରଟି ରହିଥିଲା ଉପର ଆଡ଼କୁ। ବଡ଼ ବିକଳରେ ମୁଁ ବଗିଟିର ଝରକାକୁ ଭାଙ୍ଗିବା ପାଇଁ ଯଥାସାଧ୍ୟ ଚେଷ୍ଟା କଲି, ହେଲେ ସଫଳ ହୋଇ ପାରିଲିନି। ଛାନିଆରେ ମୋତେ କିଛି ବୁଦ୍ଧିବାଟ ଦିଶିଲାନି। ତଥାପି ମୁଁ କୌଣସିମତେ ବଗିରୁ ବାହାରି ହ୍ରଦ ଭିତରକୁ ଆସିଗଲି।

ଦେଖିଲି, କେତେ ନା କେତେ ଯାତ୍ରୀ ସାହାଯ୍ୟ ପାଇଁ ହାତଟେକି ଚିତ୍କାର ଛାଡ଼ିଥାନ୍ତି। ସେମାନଙ୍କ ହାତଗୁଡ଼ିକ ହିଁ ମୋତେ ଦେଖାଯାଉଥାଏ। କିନ୍ତୁ କେଜାଣି କାହିଁକି, ମୁଁ ହଠାତ୍ ନିଜ ଜୀବନ ବଞ୍ଚେଇବା କଥା ଭୁଲିଗଲି। ମୁଁ ତୁରନ୍ତ ନିଷ୍ପତ୍ତି ନେଇଗଲି ଯେ ମୋତେ ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ପଡ଼ିବ।

ମୁଁ ବଗି ଭିତରକୁ ପଶିଗଲି। ମୋ ବଗିରେ ଥିଲା ବାଳକଟିଏ। ମୁଁ ତାହାର ହାତକୁ ଧରି ତାକୁ ବଗିର ଦ୍ୱାର ବାଟେ ବାହାରି ତାକୁ କୂଳରେ ପହଞ୍ଚେଇଦେଲି। ତା'ପରେ ପୁଣି ବଗି ଭିତରକୁ ଲମ୍ଫ ଦେଇ ପଶିଗଲି ବଗି ଭିତରକୁ। ଏଥରକ ଧରି ବାହାରି ଆସିଲି ପିଲାଟିର ଭାଇକୁ। ତାକୁ କୂଳରେ ବସେଇ ପୁଣି ଡେଇଁ ପଡ଼ିଲି ଜଳକୁ। ପୁଣି ଥରେ ବଗି ଭିତରକୁ ପଶିଯାଇ ଭିଡ଼ି ଭିଡ଼ି ବାହାରକୁ ନେଇ ଆସିଲି ଏଇ ଦୁଇଭାଇଙ୍କ ମାଆଙ୍କୁ।

ବାସ୍, ତା'ପରେ ମୋର ଆଉ ବଳ ପାଇଲାନି। ସେତେବେଳକୁ ମୁଁ ଏତେ ହାଲିଆ ହୋଇପଡ଼ିଥିଲି ଯେ, ଚାଲିବା କି ପହଁରିବା ଦୂରେ ଥାଉ, ଠିଆ ହେବା ପାଇଁ ବି ମୋର ଶକ୍ତି ନ ଥିଲା। କିନ୍ତୁ ମୋର ଅବଶୋଷ ରହିଗଲା ଯେ ମୁଁ ଆହୁରି ବେଶୀ ଲୋକଙ୍କୁ ବଞ୍ଚେଇ ପାରିଲିନି।

କେ.ଜେ. ଥୋମାସ ଯେଉଁ ପିଲାଦୁହିଁଙ୍କ ଜୀବନ ବଞ୍ଚେଇ ପାରିଥିଲେ, ସେମାନେ ଥିଲେ ଥୋମାସଙ୍କ ପୁଅ ବୟସର ।

ଥୋମାସ୍ ଚାକିରିରୁ ଅବସର ନେଇ ସାରିଲେଣି । ନିଜ ସ୍ତ୍ରୀ ଓ ପୁଅଙ୍କ ସହ ଏବେ ରହୁଛନ୍ତି କେରଳର କୋଚି ନିକଟରେ ଥିବା କୁନାନ୍‌ମାଭ୍‌ରେ ।

ଏବେ ବି ସେ ନିଜର ଭାଗ୍ୟକୁ ନିନ୍ଦୁଛନ୍ତି । କହୁଛନ୍ତି, "ମୁଁ ଆହୁରି କେତେଜଣଙ୍କୁ ସେଦିନ ବଞ୍ଚେଇ ପାରିଥାନ୍ତି ହେଲେ ।"

*ଅଭୀପ୍‌ସା, ସେକ୍ଟର- ୬, ପ୍ଲଟ ନଂ- ୧୧୩୧, ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*



# ଡାହାଣକୁ ମାଡ଼ି ଚାଲ

ଇଂ ରଘୁନାଥ ପ୍ରସାଦ ଦାସ

ପିଲାମାନେ, ତମେସବୁ ସମସ୍ତଙ୍କଠାରୁ ଶୁଣିଛ- - ରାସ୍ତାରେ ଚାଲି ଚାଲି ଗଲାବେଳେ ବାମ ପଟକୁ ମାଡ଼ି ଚାଲିବା କଥା । ଗୁରୁଜନମାନେ ତମକୁ ଏହି ବାମକୁ ମାଡ଼ି ଚାଲିବା କଥା ଶିଖାଇଥିବେ । କାରଣ ଏହାଦ୍ୱାରା ଦୁର୍ଘଟଣା କମ୍ ହେବ ବୋଲି ଆମ ଧାରଣା । ଆଗେ ରାସ୍ତାର ବାମପଟେ ସତର୍କବାଣୀ ମଧ୍ୟ ଲେଖାଯାଉଥିଲା, 'ବାମକୁ ମାଡ଼ି ଚାଲ' । କିନ୍ତୁ ଏହି ବିଷୟରେ ବହୁ ତର୍କ ଓ ବିତର୍କ ପରେ ୧୯୫୦ ମସିହାଠାରୁ ଏହି ନିୟମକୁ ବଦଳାଇ ଦିଆଯାଇଛି ଓ ଆଜିର ସତର୍କବାଣୀ ହେଉଛି, "ଚାଲିଲାବେଳେ ଡାହାଣକୁ ମାଡ଼ି ଚାଲ ଓ ଗାଡ଼ି ଚଳାଇଲାବେଳେ ବାମକୁ ମାଡ଼ି ଚାଲ ।" ଏହି ବଦଳାଇ ଦିଆଯାଇଥିବା ବିଷୟରେ ଯେଉଁ ପ୍ରକୃତ ତଥ୍ୟଟି ରହିଛି, ତାହା ହେଉଛି ଏହିପରି--

ଗାଡ଼ିଗୁଡ଼ିକ ବାମକୁ ମାଡ଼ି ଚାଲିବା ପାଇଁ ଆମେ ଭାରତ ଓ ଅନ୍ୟାନ୍ୟ କେତେକ ଦେଶରେ ନିୟମ ଅଛି । ଏହା ଫଳରେ ଆମେ ଯଦି ବାମକୁ ମାଡ଼ି ଚାଲିବା, ତେବେ ଆମ ପଛରୁ ଆମକୁ ଅତିକ୍ରମ କରିବାପାଇଁ ମାଡ଼ି ଆସୁଥିବା ଗାଡ଼ିକୁ ପଛପଟୁ ଆସୁଥିବା ହେତୁ ଆମେ ଦେଖିପାରିବା ନାହିଁ ଏବଂ ହଠାତ୍ ଗାଡ଼ିର ଶବ୍ଦ ଶୁଣି ଚମକି ପଡ଼ି ଏପଟସେପଟ ହୋଇଯିବା । ଏହା ଫଳରେ ଦୁର୍ଘଟଣା ଘଟିବାର ଆଶଂକା ଅନେକ ଅଧିକ ।

କିନ୍ତୁ ଆମେ ଯଦି ରାସ୍ତାର ଡାହାଣକୁ ମାଡ଼ି ଚାଲିବା, ତେବେ ଆମ ପଛରୁ ଆସୁଥିବା ଗାଡ଼ି ବିନା ଅସୁବିଧାରେ ଆମର ବାମପଟ ଦେଇ ଆମକୁ ଅତିକ୍ରମ କରିବ ଓ ଆଗପଟୁ ଆସୁଥିବା ଗାଡ଼ିକୁ ଆମେ ସିଧାସଳଖ ଦେଖିପାରିବା । ସାବଧାନ ହୋଇ ରାସ୍ତାର ଡାହାଣପଟ ଧାରକୁ ଚାଲିଯାଇ  ନିଜକୁ ସୁରକ୍ଷିତ ରଖିପାରିବା ।

ତେଣୁ ଚାଲିଲାବେଳେ ଡାହାଣ ପଟେ ଚାଲିବା ଓ ଗାଡ଼ି ଚଲେଇଲାବେଳେ ବାମକୁ ମାଡ଼ି ଚାଲିବା ସୁବିଧାଜନକ ।

*ଦେଉଳ ସାହି, କଟକ- ୮*

# ଏଇ ତ ବାଧା

ଚନ୍ଦ୍ରପିଡ଼ିକାକା

ବାପା ଚାଲିଗଲେ ହଳ କରିବାକୁ
ସକାଳୁ ଉଠି
ମାଆ ଚାଲିଗଲା ଧାନ ରୋଇବାକୁ
ସାରି ପାଇଟି ।
ଘର ମୁଁ ଜଗିଛି ସାଥେ ମୋର ଅଛି
ସାନ ଭଉଣୀ
ରୁଷିଲେ କାନ୍ଦିଲେ ଗାଇଦିଏ ଗୀତ
କହେ କାହାଣୀ ।
ମାଆ କହିଗଲା- ଦେଖୁଥିବୁ ଧନ
ଯିବୁନି ଛାଡ଼ି
ମାରପିଟ ତା'କୁ କରିବୁନି ଜମା
ଖାଇବୁ ବାଡ଼ି ।
ସଞ୍ଜକୁ ଫେରିଲେ ତୋ'ପାଇଁ ଆଣିବି
ବିଲ କଙ୍କଡ଼ା
ବାଲିସରା ଛତୁ ମିଠା ମିଠା କୋଳି
ମାଟିର ଘୋଡ଼ା ।
ବାପା ମାଆ କଥା ଅମାନିଆ କଲେ
ଗାଳିର ଝଡ଼
ଭଉଣୀକୁ ଛାଡ଼ି ପଢ଼ିବାକୁ ଗଲେ
ଖାଇବି ମାଡ଼ ।
ସ୍କୁଲ୍ ବେଳ ହେଲା ଘଣ୍ଟି ବି ବାଜିଲା
ଯିବି କେମିତି ?
ଖରା କି ବରଷା- ଶୀତ ବାରମାସ
ଯାଉଛି ବିତି ।
ମାଆ ଘରେ ଥିଲେ ସ୍କୁଲ ଯାଏ ମୁହିଁ
ଦିନେ ଦି'ଦିନ
ବାପ ମାଆ ତୁଲେ ଘର କାମ କଲେ
ପାଠ ସପନ ।
ପଲ୍ଲୀ ଗାଆଁ ଆମ ଅଭାବ କଷଣ
ଏଇ ତ ବାଧା
ନିଦା ଥାଇ ମୁହିଁ ପାଲଟି ଗଲିଣି
ଅଲୋଡ଼ା ଖଦା ।
ତଥାପି ମୋ ଆଶା ତୁଟିନାହିଁ ଏବେ
ଶିଖିବି କିଛି
ମୂରୁଖ ଗୁଣରୁ ତରିଯିବି ବୋଲି
ପଣ କରିଛି ।
ନିତି ସଞ୍ଜବେଳେ ପଢୁଅଛି ବସି
ଖଣ୍ଡିଆ ପାଠ
ଭଉଣୀଟା ମୋର ଟିକେ ବଢ଼ିଗଲେ
ମିଳିବ ବାଟ ।

*ନୂଆଁସାହି, ବିଷମ କଟକ, ରାୟଗଡ଼ା- ୭୬୫୦୧୯*



ସିଙ୍ଗାପୁରରେ ଚୁଇଂଗମ୍ ଖାଇବା ଓ ରଖିବା ଆଇନ୍‌ସମ୍ମତ ନୁହେଁ ।

# ଚାରି ଓଲୁ

ଶ୍ରୀ ପ୍ରଫୁଲ୍ଲ କୁମାର ସୂତାର

ନଦୀଟିଏ। କୁଳୁକୁଳୁ ଛନ୍ଦରେ ବହିଯାଉଛି କାହିଁ କେତେ ଦୂରକୁ। କୂଳରେ ତାର ପାତ୍ରପଡ଼ା ଗାଁ। ଗାଁ'ରେ ବ୍ରାହ୍ମଣ, କରଣ, ତେଲି, ବଢ଼େଇ, କମାର ଆଦି ସବୁଜାତିର ଲୋକ ବାସ କରନ୍ତି। ନଈର ପାଣି, ବିଲରେ ସୁନାର ଫସଲ ଫଳାଏ। ଗାଁ ଲୋକମାନଙ୍କର ସବୁ କାମରେ ନଈ ଭାଗ ନିଏ। ଗାଧୋଇବାଠାରୁ ଆରମ୍ଭ କରି ଗାଁର ବୋହୂ ଭୁଆଷୁଣୀଙ୍କର କଂସା ମଜାହୁଏ ଏଇ ନଈରେ। ନଈ ଗାଁଲୋକଙ୍କର ମା'। ତା'ର ପାଣି, ତା'ର ମାଛ ଗାଁ ଲୋକଙ୍କର ଶରୀରକୁ ପୁଷ୍ଟି ଦେବା ସହିତ ବନ୍ୟା ଆଣି କ୍ଷେତବାଡ଼ିକୁ ଉଜାଡ଼ିଦେଇ ଲୋକଙ୍କ ଆଖିରେ ଲୁହ ଭରିଦିଏ।

ସେ ବର୍ଷ ଏକ ଭୟଙ୍କର ବନ୍ୟା ଆସିଛି। ଫେଣମିଶା ବନ୍ୟା ପାଣି ଗର୍ଜନ କରି ପ୍ରବାହିତ ହେଉଛି ପାତ୍ରପଡ଼ା ଗାଁ ପାଖ ଦେଇ। ସେଦିନ ଝଟଝଟିଆ ବଡ଼ି ଭୋର୍‌ରୁ 'ଦାମା କମାର' ସକାଳ ଶୌଚ କାମ ସାରି ନଈବନ୍ଧ ଦେଇ ଗାଁ'କୁ ଫେରୁଥିଲା। ତାର ଆଖି ପଡ଼ିଗଲା ନଈଘାଟ ଉପରେ। ଡରିଗଲା ସେ। ଭଲ ଭାବରେ ନିରୀକ୍ଷଣ କରି ଦେଖିଲା। ତାକୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା। 'ଜଗୁ ମାହାନ୍ତି'ର ଭାଇବୋହୂ ମଡ଼ା ଖାଉଛି। ଘାଟରେ ଏକ ଶବକୁ ଦୁଇହାତରେ ଧରି ତା'ଅଣ୍ଟା ପାଖରେ ମୁହଁ ଲଗେଇ ମାଂସ ଖାଉଛି ସେ। ଜଗୁ ମାହାନ୍ତି ତା'ର ସାଙ୍ଗ। ସେ ପାଖରେ ଥିବା ତେନ୍ତୁଳିଗଛ ପଛରେ ଲୁଚିଗଲା। ସେ ଦେଖିଲା, ତା'ର ସନ୍ଦେହ ସତ। କିଛି ସମୟ ଅପେକ୍ଷା କଲା ପରେ ଦେଖିଲା ଜଗୁ ମାହାନ୍ତିର ଭାଇବୋହୂ କଳସୀରେ ପାଣି ଧରି ଧୀରେ ଧୀରେ ତାଙ୍କ ଘର ଆଡ଼କୁ ଯାଉଛି। ତା'ର ପଛେ ପଛେ ଆସିଲା ଦାମାକମାର। ଜଗୁ ମାହାନ୍ତି ତାଙ୍କ ପିଣ୍ଡାରେ ବସିଥିଲା। ପାଖରେ ବସିଗଲା ଦାମ। କହିଲା, "ଆରେ ଜଗୁ ! ତୋ ଭାଇବୋହୂଟା ଗୋଟିଏ କଞ୍ଚା ଡାଆଣୀ।" "ତୁ' ସତ କହୁଛୁ?" ପଚାରିଲା ଜଗୁ ମାହାନ୍ତି।

"ମୁଁ ପରା ତୋ'ସାଙ୍ଗ। ତତେ କଣ ମିଛ କହୁଛି? ତତେ ମିଛ କହି ଲାଭ କ'ଣ? ସେ ଶବ ଖାଉଥିବାର ମୁଁ ନିଜ ଆଖିରେ ଦେଖିଛି। ଏଭଳି ମାଇକିନାକୁ ଘରେ ରଖିଲେ ତୁ ତଳିତଳାନ୍ତ ହେଇଯିବୁ ଜଗୁ। ମୋ'କଥା ମାନି ତାକୁ ତା'ବାପଘରକୁ ପଠାଇ ଦେ। ନହେଲେ ଭାରି ଅସୁବିଧାରେ ପଡ଼ିବୁ। ହଉ ମୁଁ ଯାଉଛି। ଏ' ଆଖି ଆଜି କ'ଣ ନ ଦେଖିଲା !...." କହି କହି ଚାଲିଗଲା ଦାମା କମାର।

ଗମ୍ଭୀର ହୋଇଗଲା ଜଗୁ ମାହାନ୍ତି। ଭାବୁଥିଲା, ସତରେ ଏ ଭଳି ମାଇକିନା ଯଦି ଘରେ ରହେ, ତେବେ ତା'ର ସର୍ବନାଶ ହୋଇଯିବ। ସେ ତାର ସାନଭାଇକୁ ଡାକିଲା ଏବଂ ତାକୁ ସବୁକଥା କହି ସ୍ତ୍ରୀକୁ ନେଇ ତା'ର ବାପଘରେ ଛାଡ଼ିଦେଇ ଆସିବାକୁ କହିଲା।

ତା' ଭାଇ ମଧୁଆ ତା' ସ୍ତ୍ରୀକୁ କହିଲା,"ଚାଲ୍ ତୋତେ ନେଇ ତୋର ବାପଘରେ ଛାଡ଼ିଦେଇ ଆସିବି। ଶୀଘ୍ର ବାହାରିପଡ଼।" "କାହିଁକି ?" ତା'ସ୍ତ୍ରୀ ତାକୁ ପଚାରିଲା। "ତୁ ଗୋଟିଏ ଡାହାଣୀ। ମଲାମଣିଷର ମାଂସ ଖାଉଛୁ। ତୁ ଏଠି ରହିପାରିବୁ ନାହିଁ। ତତେ ଯିବାକୁ ହେବ।" ମଧୁଆ ଉତ୍ତରଦେଲା।

ସେତେବେଳେ ତ ଗାଡ଼ିଘୋଡ଼ା ନ ଥିଲା। ଲୋକମାନେ ଚାଲି ଚାଲି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ। ତେଣୁ ଦୁଇଜଣ ଚାଲି ଚାଲି ଶ୍ୱଶୁର ଘର



ଆଡ଼କୁ ଚାଲିଲେ । ସଡ଼କ ଦେଇ ଗଲେ ଅଧିକ ସମୟ ଲାଗିବ ଭାବି ବିଲ ବାଟ ଦେଇ ଯାଉଥିଲେ । ବିଲରେ ଚାଷୀମାନେ ଖରାଟିଆ ହଳ କରୁଥାନ୍ତି । ମଧୁଆ ଦେଖିଲା ଜଣେ ଚାଷୀ ଗୋଟିଏ ସିଆରରେ ହଳ ବୁଲେଇବାରେ ଲାଗିଛି । ସେ ତା'ର ସ୍ତ୍ରୀକୁ କହିଲା, "ଏ ଚଷାଟା କେଡ଼େ ଓଲୁ! ଗୋଟିଏ ସିଆରରେ ହଳ ବୁଲେଇବାରେ ଲାଗିଛି । ଏହାଦ୍ୱାରା ବିଲରେ ଘାସ ମରିବ ନାଁ ଚାଷ ହେବ ! ଏ ଓଲୁ କ'ଣ ଏକଥା ଜାଣିନି ।" ଏକଥା ଶୁଣି ତାର ସ୍ତ୍ରୀ କହିଲା, " ଏ ଦୁନିଆରେ ସମସ୍ତେ ଓଲୁ । ଅବଶ୍ୟ ଏ ଚଷାଭାଇ ଚତୁର୍ଥ ଓଲୁ ।" ମଧୁଆ କହିଲା, "କେମିତି ?" ତା' ସ୍ତ୍ରୀ କହିଲା--

"ଏକ୍ ଓଲୁ ଦାମାକମାର
ଦୁଇ ଓଲୁ ଦେଢ଼ଶୁର ଆମର
ତିନି ଓଲୁ ବାପାଙ୍କ ଜୋଇଁ
ଚାରି ଓଲୁ ଚଷାଭାଇ ।"

"ମୁଁ ତ ଏଥିରୁ କିଛି ବୁଝିପାରିଲି ନାହିଁ ।" ମଧୁଆ କହିଲା । ତା' ସ୍ତ୍ରୀ କହିଲା, "ହଉ ଆମେ ଆଉ ଆମ ଗାଁକୁ ଯିବା ନାହିଁ । ଏଇଠୁ ଘରକୁ ଫେରିବା । ଘରେ ମୁଁ ସବୁକଥା ବୁଝାଇଦେବି ।" ମଧୁଆ ଆଉ ଶ୍ୱଶୁର ଘରକୁ ଯିବ କ'ଣ, ସ୍ତ୍ରୀକୁ ଧରି ନିଜ ଘରକୁ ଫେରିଲା ।

ଘରକୁ ଆସି ମଧୁଆ ସ୍ତ୍ରୀ କବାଟ ବନ୍ଦ କରି ତା'ଅଣ୍ଟାରେ ବନ୍ଧା ହୋଇଥିବା ଗୋଟିଏ ମୁଣିକୁ ଖୋଲି ସେଥିରେ ଥିବା ରୁପା ଟଙ୍କାଗୁଡ଼ିକୁ ତଳେ କୁଢ଼େଇ ପକେଇଲା । ମଧୁଆ ପଚାରିଲା, "ଏ ଟଙ୍କା ସବୁ କଉଠୁ ଆସିଲା?" "ମୁଁ ମଡ଼ା ଖାଉଥିବାର ଦେଖି ଦାମାକମାର 'ବଡ଼'ଙ୍କୁ କହିଲା । ତମ ଭାଇ ତମକୁ କହିଲେ । ତମେ ମୋତେ ମୋ ବାପଘରେ ଛାଡ଼ି ଆସିବାକୁ ନେଇଯାଉଥିଲ । ପ୍ରକୃତ କଥା ହେଲା, ସେଦିନ ନଈତୁଠରେ ଗୋଟିଏ ଶବ ଭାସିଆସି ଲାଗିଥିଲା । ମୁ ଗାଧୋଇବାକୁ ଯାଉଥିଲି । ଦେଖିଲି, ଶବ ଅଣ୍ଟାରେ ଏ ମୁଣିଟି ବନ୍ଧାଯାଇଛି । ମୁଁ ଭୟରେ ପଳାଇ ଆସୁଥିଲି । କ'ଣ ମନ ହେଲା କେଜାଣି, ପାଖକୁ ଯାଇ ଦେଖିବାରୁ ମୁଣିରେ ଟଙ୍କା ଥିବା ଭଳି ଲାଗିଲା ।

ହାତ ମାରି ଦେଖିଲା ବେଳକୁ ପ୍ରକୃତରେ ଟଙ୍କା । ମୁଁ ଫିଟାଇ ଆଣିବାକୁ ଯେତେ ଚେଷ୍ଟା କଲି, ପାରିଲି ନାହିଁ । ବାଧ୍ୟ ହୋଇ ଦାନ୍ତରେ ମୁଣିର ସୂତା କାଟିବାକୁ ଲାଗିଲି । ଠିକ୍ ସେତିକିବେଳେ ଦାମାକମାର ନଈବନ୍ଧ ଦେଇ ଆସୁଥିଲା । ସେ ଭାବିଲା-- ମୁଁ ମଲାମଣିଷର ମାଂସ ଖାଉଛି । ତେଣୁ ସେ 'ଏକ ନମ୍ବର ଓଲୁ' । ଆଖିଦେଖା କଥା ସବୁ ସମୟରେ ସତ ହୁଏନାହିଁ । ଏକଥା ସେ ଭାବିଲା ନାହିଁ । ତମ ଭାଇ ମଧ୍ୟ ତା'କଥାରେ ପଡ଼ି ବିଶ୍ୱାସ କରିଗଲେ ମୁଁ ଡାଆଣୀ ବୋଲି । ଏତେ ଦିନ ତମ ଘରେ ରହିବା ପରେ ମଧ୍ୟ ମତେ ଜାଣିପାରିଲେ ନାହିଁ, ପଚାରିଲେ ବି ନାହିଁ । ସେ 'ଦୁଇ ନମ୍ବର ଓଲୁ' । ତମେ

# ସୁଖେ ଦୁଃଖେ ସାହା ଠାକୁର

ଶ୍ରୀ ନଦୀୟା ବିହାରୀ ମହାନ୍ତି

ନାଆଁଟି ତାହାର 'ଧନିଆ'
ମୂଳ ଲାଗି ନିତି ଧନ ଅରଜଇ
ସାଥୀଟି ତାହାର 'ସନିଆ' ।୧।

ଧନିଆ ସନିଆ ଯେଉଁଠି
ଯୋଉ ମୂଳ କାମ ହାତକୁ ନିଅନ୍ତି
ଭାରି ଭଲ ହୁଏ ସେଇଟି ।୨।

କୋଠା ତୋଳାଠାରୁ ପୋଖରି
ଖୋଳା ହୁଏ ଯହିଁ ଖୋଜା ପଡ଼ନ୍ତି ସେ
ଗାଁଠୁ ସହର ସବୁରି ।୩।

କାମ କରିବାରେ ଠକେଇ
କେବେ କାହିଁ ଦିହେଁ କରି ତ ନାହାନ୍ତି
କେହି ନ ପାରିବ ଦେଖେଇ ।୪।



'ଧନିଆ' କହଇ 'ସନିଆ'
ଝାଳ ବୁହା ଧନେ ଚଳି ଯାଏ ଭାଇ
ସୁଖେ ଆମ ଟିକି ଦୁନିଆଁ ।୫।

ସନିଆ' ଦିଅଇ ଉତ୍ତର
ସୁପଥରେ ଆମେ ବାଟ ଚାଲୁଥିଲେ
ସୁଖେ ଦୁଃଖେ ସାହା ଠାକୁର ।୬।
ଏ କଥା ତୁ ହେଜ କର......!!!

*ତଳତେଲେଙ୍ଗା ବଜାର, କଟକ- ୯*

---

ହେଲ 'ତିନି ନମ୍ବର ଓଲୁ' । ମୁଁ ତୁମର ସ୍ତ୍ରୀ । ଏତେ ଦିନ ମୋ ସହିତ ଘରସଂସାର କରିବା ପରେ ବି ତମେ କେମିତି ବିଶ୍ୱାସ କରିଗଲ ମୁଁ ଡାଆଣୀ । ସ୍ୱାମୀ ହିସାବରେ ସବୁ କଥା ମୋ'ଠାରୁ ବୁଝିପାରିଥା'ନ୍ତ । ହେଲେ ଭାଇ କଥାକୁ ବିଶ୍ୱାସ କରି ତମେ ମତେ ମୋ ବାପଘରେ ଛାଡ଼ି ଆସିବାକୁ ନେଇଯାଉଥିଲ । ତା'ପରେ ଶେଷରେ ଚଷାଭାଇ ଭଲ ଭାବରେ ଚାଷ ବିଷୟରେ ନ ଜାଣି ହଳ କରୁଥିଲା; ତେଣୁ ସେ 'ଚାରି ନମ୍ବର ଓଲୁ' । ଏବେ ଏ ଟଙ୍କା ସବୁ ନିଅ ତମ ଭାଇଙ୍କୁ ଦେବ । ସବୁକଥା ବୁଝେଇ କହିବ ।"

ମଧୁଆ ଟଙ୍କା ସବୁ ନେଇ ଭାଇଙ୍କୁ ଦେଲା ଏବଂ ସବୁକଥା ବୁଝେଇ କହିଲା । ଜଗୁ ମାହାନ୍ତି ସବୁ ଜାଣି ବିନା ଦୋଷରେ ବୋହୂଟାକୁ ଘରୁ ତଡ଼ି ଦେଇଥିବାରୁ ଲଜ୍ଜିତ ହେଲେ ଏବଂ କହିଲେ, "ସତରେ ବୋହୂଟା ଆମର ଭାରି ବୁଦ୍ଧିଆ । ମୁଁ ଅଯଥାରେ ଖାଲି ତାକୁ ଘରୁ ତଡ଼ି ଦେଉଥିଲି । ତାଙ୍କୁ କହିଦେବୁ, ଏ କଥା ସେ ମନରେ ଧରିବ ନାହିଁ ।"

ସବୁବେଳେ ଭଲ ଭାବରେ ବୁଝିବିଚାରି କାମ କରିବା ଉଚିତ । ନହେଲେ ଶେଷକୁ ଲଜ୍ଜିତ ହେବାକୁ ପଡ଼ିଥାଏ ।

*ବାରାପୁର, ଅନନ୍ତପୁର, ଭଦ୍ରକ- ୭୫୬୦୪୬*

# ଫୁଲଠାରୁ କୋମଳ, ବଜ୍ରଠାରୁ କଠିନ

ଶ୍ରୀମତୀ ସୁଷମା ମିଶ୍ର

ଜେରୁସେଲମ ସହରରେ ଜଣେ ବ୍ୟକ୍ତି ଯେତେବେଳେ ଘରକୁ ସଂଧ୍ୟାରେ ଫେରିଲେ, ଦେଖିଲେ ତାଙ୍କ ପତ୍ନୀ ଘରେ ନାହାନ୍ତି। ପତ୍ନୀଙ୍କର ଅନୁପସ୍ଥିତିରେ ତାଙ୍କର କିଛି ଅସୁବିଧା ହେଲାନାହିଁ। ଟେବୁଲ୍ ଉପରେ ଖାଇବା ଜିନିଷ ଥୁଆ ହୋଇଥିଲା, ତା' ସହିତ ଖଣ୍ଡେ ଲେଖା ମଧ୍ୟ ଥିଲା, "ସୈନ୍ୟବାହିନୀରେ ଯୋଗଦେବା ପାଇଁ ଡାକରା ଆସିବାରୁ ମୁଁ ଯାଉଛି, ତୁମେ ଖାଇନେବ।" ବ୍ୟକ୍ତି ଜଣଙ୍କ ଖାଇସାରି ବସିଥାନ୍ତି, ଯୁଦ୍ଧକ୍ଷେତ୍ରରୁ ତାଙ୍କ ପତ୍ନୀ ଫୋନ୍‌ରେ କହିଲେ, "ମୁଁ ତୁମ ପାଇଁ ମୋଜା ବୁଣିଦେଇଛି, ମନେକରି ପିନ୍ଧିବ। ଯୁଦ୍ଧ ପରେ ତୁମ ସହିତ ଦେଖାହେବ।"

ଏହା ଏକ କାହାଣୀ ନୁହେଁ, ଇସ୍ରାଏଲ୍‌ର ଏକ ନିଛକ ସତ୍ୟ-ଘଟଣା। ସେଠାରେ ପ୍ରତ୍ୟେକ ଯୁବତୀ-ସୈନ୍ୟଙ୍କ ପତି ଏକାକୀ ଚଳିବାରେ ଅଭ୍ୟସ୍ତ ଥା'ନ୍ତି। ଯୁଦ୍ଧ ସମୟରେ ସେ ଦେଶରେ ଯୁବତୀମାନେ ସ୍ୱଇଚ୍ଛାରେ ଦେଶର ରକ୍ଷା କାର୍ଯ୍ୟରେ ସୈନ୍ୟ ରୂପେ ଯୋଗ ଦେଇଥା'ନ୍ତି। ଅନ୍ୟ ଦେଶରେ ଯୁବକମାନଙ୍କୁ ବାଧ୍ୟତାମୂଳକ ଭାବେ ସେନାବାହିନୀରେ ନିଯୁକ୍ତ କରାଯାଏ।

କେବଳ ଇସ୍ରାଏଲ୍ ଏକମାତ୍ର ଦେଶ, ଯେଉଁଠାରେ ଯୁବତୀମାନେ ବାଧ୍ୟତାମୂଳକ ଭାବେ ସୈନ୍ୟବାହିନୀରେ ଯୋଗଦିଅନ୍ତି। ଫଳରେ ଝିଅପିଲାମାନଙ୍କର ଏକ ଭିନ୍ନ ରୂପ ସେଠାରେ ବିକଶିତ ହୁଏ। ଇସ୍ରାଏଲ୍‌ର ସାଧାରଣ ଝିଅପିଲାଙ୍କର ହୃଦୟ ଫୁଲ ପରି କୋମଳ, କିନ୍ତୁ ଆବଶ୍ୟକ ସ୍ଥଳେ ଦେଶରକ୍ଷା ନିମନ୍ତେ ତାହା ବଜ୍ରଠାରୁ କଠିନ ହୋଇଯାଏ। ବର୍ତ୍ତମାନ ଆମ ନାରୀ-ସମାଜର ସ୍ଥିତିକୁ ବିଚାର କଲେ, ଏ କ୍ଷେତ୍ରରେ ପୁରୁଷ ତୁଳନାରେ ପଛରେ ପଡ଼ିଯାଇଥିବାର ଲକ୍ଷ୍ୟ କରାଯାଏ। ଆମର ରଣକ୍ଷେତ୍ର ଏ ପର୍ଯ୍ୟନ୍ତ ପୁରୁଷଙ୍କର ଏକାଧିପତ୍ୟ ହୋଇ ରହିଛି; କିନ୍ତୁ ଇସ୍ରାଏଲ୍‌ର ନାରୀ ସମାଜ ଏହି ପୁରୁଷ ପ୍ରାଧାନ୍ୟକୁ ଦୂର କରି ଦେଇଛନ୍ତି। ବିଗତ କୋଡ଼ିଏ ବର୍ଷ ଭିତରେ ଏ ଦେଶରେ ଝିଅମାନେ ସେନାବାହିନୀର ପ୍ରଧାନ ଅଙ୍ଗ ରୂପେ ବିବେଚିତ ହୋଇଛନ୍ତି। ଏ ଦୃଷ୍ଟିରୁ ସେମାନଙ୍କୁ ବିଶ୍ୱର ଶ୍ରେଷ୍ଠ ନାରୀ-ସୈନିକ କୁହାଯାଏ।

ଆଜି ପର୍ଯ୍ୟନ୍ତ ଝିଅମାନଙ୍କୁ ସମସ୍ତେ କୋମଳତା,



ଦୟା, ମମତା ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ବୋଲି ମନେ କରୁଛନ୍ତି। କିନ୍ତୁ ସମୟ ପଡ଼ିଲେ ସେମାନେ ନିଜର ନାରୀସୁଲଭ ଗୁଣକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ନିର୍ଭୀକ, କଠୋର ହୋଇ ଯୁଦ୍ଧ ଭଳି କାର୍ଯ୍ୟରେ ସହଯୋଗୀ ହୋଇପାରୁଛନ୍ତି। ଇସ୍ରାଏଲ୍‌ର ବିମାନ ଚାଳନା କାମ ଏବଂ ଚୀନ୍‌ରେ ରେଳ ଇଂଜିନ୍ ଚଳାଇବା କାମ ପ୍ରାୟତଃ ମହିଳାମାନେ ହିଁ କରନ୍ତି। ଏବେ ପ୍ରାୟ ଅନେକ ଦେଶରେ ନାରୀମାନଙ୍କୁ ପୁରୁଷର ସମକକ୍ଷ ହେବା ପାଇଁ ଅଧିକାର ପ୍ରଦାନ କରାଗଲାଣି।

ଇତିହାସ ପୃଷ୍ଠା ଓଲଟାଇଲେ ଦେଖାଯାଏ ଯେ ଅତୀତରେ ବହୁତ ଯୋଦ୍ଧାନାରୀ ନିଜ ଦେଶର ରକ୍ଷା ପାଇଁ ପ୍ରାଣପଣେ ଯୁଦ୍ଧ କରି ନିଜକୁ ବଳି ଦେଇଛନ୍ତି। ଇସ୍ରାଏଲ୍ ଏ ବିଷୟରେ ସବୁଠାରୁ ଆଗରେ ଅଛି। ତେଣୁ ପ୍ରତ୍ୟେକ ଝିଅ ଏହାକୁ ହୃଦୟଙ୍ଗମ କରି, ସେହିପରି ନିଷ୍ଠାର ସହ ହୃଦୟରେ କୋମଳ ମନୋଭାବ ରଖି ନିଜର ସୁରକ୍ଷା ପାଇଁ ଆବଶ୍ୟକ ସ୍ଥଳେ କଠୋର ହୋଇ ନିଜକୁ ରକ୍ଷା କରିବା ସମୀଚୀନ।

(ଇସ୍ରାଏଲ୍‌ର ଏକ ନିଚ୍ଛକ ସତ୍ୟ କାହାଣୀ ଉପରେ ଆଧାରିତ)

*ନୂଆପଡ଼ା, ବାଲିସାହି, ମଧୁପାଟଣା, କଟକ-୧୦*

❖❖



ନୂତନ ଚିନ୍ତାଧାରାର କପ୍ ହୋଲ୍‌ଡର



୩୧ ବର୍ଷ ବୟସର ତୁଳସୀ ଗବାର୍ଡ, ଡେମୋକ୍ରାଟ୍, ଆମେରିକାର ପ୍ରତିନିଧି ସଭାକୁ ନିର୍ବାଚିତ ହୋଇଛନ୍ତି। ସେ ସୁଦୂର ହାୱାଇର ବାସିନ୍ଦା। ତାଙ୍କୁ ମନୋନୀତ କରିଛନ୍ତି ହାୱାଇରେ ଜନ୍ମିତ ରାଷ୍ଟ୍ରପତି ଓବାମା। ଗାବାର୍ଡ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ରିପବ୍ଲିକାନ୍ ପ୍ରାର୍ଥୀଙ୍କୁ ଆଶାତୀତ ଭୋଟ୍ ପାଇ ପରାସ୍ତ କରିଛନ୍ତି (ଗବାର୍ଡ ୮୦.୬% ଭୋଟ୍ ପାଇଥିବା ସ୍ଥଳେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ୧୯.୪% ପାଇଛନ୍ତି)।

ସେ ହେଉଛନ୍ତି ପ୍ରଥମ ଭାରତୀୟ-ଆମେରିକାନ୍ ମହିଳା, ଯିଏକି ଆମେରିକାନ୍ କଂଗ୍ରେସ ପ୍ରତିନିଧି ସଭାରେ ଭଗବତ୍ ଗୀତା ଛୁଇଁ ଶପଥ ଗ୍ରହଣ କରିଛନ୍ତି। ଭାରତୀୟ ବଂଶୋଦ୍ଭବ ହୋଇ ମଧ୍ୟ ସେ କେବେ ଭାରତ ଆସିନାହାନ୍ତି। ❖❖❖❖

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର- -** ୧। ଶରୀରର ସନ୍ତୁଳନ (Balance) ରକ୍ଷା କରିଥାଏ, ୨। ମିଛ, ୩। ଗୌତମବୁଦ୍ଧ, ୪। ଗନ୍ଧର୍ବମ୍ (Gandharvam), ୫। ଉତ୍ତରାଖଣ୍ଡ, ୬। ପୋଲୋ ୭। ଜୟ, ୮। ବାଳଗଙ୍ଗାଧର ତିଳକ, ୯। ସେପ୍‌ଟେମ୍ବର ୨୪ ତାରିଖ, ୧୦। Reserch Developement Explosive.

# ହସିବା କୁଲୁକୁଲୁ

ଶ୍ରୀ ନିରଞ୍ଜନ ସାହୁ



ଆସରେ ମୋର ଭଉଣୀଭାଇ ଆସ ସଙ୍ଗାତ ମିତ
ଆସରେ ଆସ ଲେଖିବା ଆମେ ଗପ ସହିତେ ଗୀତ ।
ମନରେ ନୂଆ ଭାବନା ନେବା କରିବା କଳପନା
ଆଖିରେ ଆମ ଭରି ରହିଛି ସପନ ଚୂନାଚୂନା ।
ଛୋଟିଆ ପିଲା ହେଲେ ବି ଅଛି ଆମରି କେତେ ବୁଦ୍ଧି
ଲେଖି ଚାଲିବା ଗପ କବିତା ଥିବ ବନାନ ଶୁଦ୍ଧି ।
ପଦକୁ ପଦ ଯୋଡ଼ି ଲେଖିବା କବିତା ଧାଡ଼ି ଧାଡ଼ି
ଏମିତି ଗପ ଲେଖିବା ସର୍ବେ ଖୁସି ହୋଇବେ ପଢ଼ି ।
ଏମିତି ଲେଖିଲେଖିକା ଦିନେ ବଡ଼ ଲେଖକ ହେବା
ଯୁଗ ଯୁଗକୁ ଯଶ ରଖିବା ସୁନାମ ଅରଜିବା ।
ଛୋଟିଆ ପିଲା ହେଲେ ବି ଆମ ବାଣଟା ଅତି ଟାଣ
ଜୀବନେ ବଡ଼ ହୋଇବା ପାଇଁ କରିବା ଆମେ ପଣ ।
ମାତୃଭୂମିର ମାତୃଭାଷାର ଉନ୍ନତି ଯିଏ କରେ
ସେହି ସନ୍ତାନ ମାଆର ଏକା ଋଣକୁ ସୁଝିପାରେ ।
ଆସ ମୋହରି ସାଥୀସଙ୍ଗାତ ନ କର ଆଉ ଡେରି
କଲମ ଧର କଲମ ଧର ମନକୁ ଥୟ କରି ।
ଭାଷା ସାହିତ୍ୟ ସମୃଦ୍ଧ କର ବେଗେ କଲମ ଚାଲୁ
ମାତୃଭାଷାର ଉନ୍ନତି କରି ହସିବା କୁଲୁକୁଲୁ ।

*ରାଇଗୋଡ଼ା ପ୍ରାଥମିକ ବିଦ୍ୟାଳୟ, ନିହଲ ପ୍ରସାଦ, ଗନ୍ଦିଆ ପାଟଣା, ଢେଙ୍କାନାଳ- ୭୫୯୦୧୬*

---



ପାର୍ଶ୍ୱସ୍ଥ ପ୍ରାକୃତିକ ଦୃଶ୍ୟଚିତ୍ରକୁ ଉପଭୋଗ କରିବା ସମୟରେ ଆପଣ ଆଉ ଗୋଟିଏ ଚିତ୍ର ଦେଖିପାରୁଛନ୍ତି କି ?? ଚେଷ୍ଟା କରନ୍ତୁ ।

# ପିଠିରେ ପଡ଼ିବ କିଏ ?

ବି. ନିରୁପମା

ରହସ୍ୟ, ରୋମାଞ୍ଚଭରା ଦସ୍ୟୁ ରଞ୍ଜନ ସିରିଜ୍ ପଢ଼ିବାରେ ମଜ୍ଜିଯାଇଛି ସୌରଭ । ଖେଳଛୁଟିରେ ଖେଳିବାକୁ ନ ଯାଇ ବସି ପଢ଼ିଛି ଖମ୍ବକୁ ଆଉଜି । ଖେଳାଖେଳି କରିବାକୁ ଆଜି ତାର ଆଗ୍ରହ ନାହିଁ। ଅମୀୟ, ସୁକାନ୍ତ ଆସି ଖେଳିବାକୁ ଡାକିଗଲେଣି କେତେଥର । ନା, ଅଧାରୁ ଏ ବହିକୁ ଛାଡ଼ି ଉଠି ହବନି । ଯେମିତି ହଉ ଯା'କୁ ସାରିବାକୁ ପଡ଼ିବ ।

ପୁଣିଥରେ ସୁକାନ୍ତ ଆସି ସୌରଭକୁ ଟଣାଟଣି କଲା ଖେଳିବାକୁ । ନ' ଶୁଣିବାରୁ ଝିଙ୍କିନେଲା ବହିକୁ । ବାସ୍, ସେଇଥିରୁ ଆରମ୍ଭ ହେଲା ବଚସା । ତା'ପରେ ହାତାହାତି । ଅନ୍ୟ ସାଙ୍ଗମାନେ ଆସି ଦୁହିଙ୍କ ଝଗଡ଼ା ବନ୍ଦ କଲେ ।

ଏମିତିରେ କିଛି ଦିନ ବିତିଲା । ଦୋଳଛୁଟିରେ ସୌରଭ ଗଲା ମାମୁ ଘରକୁ । ସେଠାରେ ଅନୁଷ୍ଠିତ ହେଉଥାଏ ଠାକୁରାଣୀ ଯାତ୍ରା ଆଉ ମେଳା । ଘରେ ମାଇଁ ତିଆରି କରିଥା'ନ୍ତି କେତେ ପ୍ରକାର ପିଠା, ମିଠା । ଅଜା ଆଇଙ୍କ ପାଖରୁ ଅନୁମତି ନେଇ ସୌରଭ ମାମୁଙ୍କ ସହିତ ଗଲା ଯାତ୍ରା ଦେଖିବାକୁ ।

ଠାକୁରାଣୀଙ୍କ ପୂଜା । ତା'ସାଙ୍ଗକୁ ଭଳିକି ଭଳି ସାଜସଜ୍ଜା ଓ ଜିନିଷ । ମୀନାବଜାର, ଯାଦୁଖେଳ ଯେତେ ଦେଖିଲେ ବି ମନ ପୂରୁନି । ଯାତ୍ରାରେ ଆଉ କିଛି ସମୟ ବୁଲିବାକୁ ମାମୁଙ୍କୁ ଅନୁରୋଧ କଲା ସୌରଭ । ଜରୁରୀ କାମ ଥିବାରୁ ମାମୁ କହିଲେ, "ସୁବିଧାରେ ବୁଲାବୁଲି ସାରି ଘରକୁ ଫେରିବ । ଏଣୁତେଣୁ କିଛି ଖାଇବନି । ମୁଁ ଏବେ ଆସୁଛି ।" ମାମୁ ଚାଲିଗଲେ ।

ସୌରଭ ଏକାକୀ ଘୂରି ବୁଲୁଥାଏ ଯାତ୍ରାରେ । ହଠାତ୍ ଦେଖା ହୋଇଗଲା ସୁକାନ୍ତ ସହିତ । ଖୁସିରେ ସୁକାନ୍ତ ଆଗେଇଆସି କହିଲା, "ଏଇ ପାଖରେ ଆମ ଘର । ଚାଲ ଆମ ଘରକୁ ଯିବା । ତୁ ମୋର ସ୍କୁଲ ସାଙ୍ଗ ନା, ତୋତେ ଦେଖିଲେ ବୋଉ ଭାରି ଖୁସି ହେବ ।"

ସୁକାନ୍ତ ସହ ଥିଲେ ଆଉ ଦୁଇଜଣ ପିଲା । ସୌରଭ ଆଗପଛ ନ ଭାବି ବାହାରି ପଡ଼ିଲା ତାଙ୍କ ସାଙ୍ଗରେ । ଯାତ୍ରା ପଡ଼ିଆରୁ ଟିକେ ଦୂର ଗଲା ପରେ ନିଛାଟିଆ ରାସ୍ତା ଦେଖି ସୌରଭକୁ ସୁକାନ୍ତ ଓ ତା' ସାଙ୍ଗମାନେ ଚାରିପଟୁ ଘେରିଗଲେ । ସୁକାନ୍ତ କହିଲା, "ହାଇସ୍କୁଲରେ ସେଦିନ ଖେଳିବାକୁ ଡାକିବାରୁ ତୁ ମୋତେ ଗାଳି କରି ବାଡ଼େଇଥିଲୁ । ଆଜି ମୋର ପାଳି । ଯିବୁ କୁଆଡ଼େ ? ମୋ ବାପା ଏଠିକା ସରପଞ୍ଚ । ଯାହା କଲେ ବି କେହି ତୋ ପିଠିରେ ପଡ଼ିବେନି ।"

"ଦେଖ୍ ସୁକାନ୍ତ, ମୁଁ ଏଠିକୁ ଯାତ୍ରା ଦେଖିବାକୁ ଆସିଛି, ତୋ ସହ ଝଗଡ଼ା କରିବାକୁ ନୁହେଁ । ତା'ପରେ ସେଦିନ ଘଟଣାର ସମାଧାନ ବି ସରିଛି । ଏବେ ମୋ ରାସ୍ତା ଛାଡ୍, ମୁଁ ଯିବି ।" କହିଲା ସୌରଭ ।

"ଯିବୁ କୁଆଡ଼େ ? ମୁଁ ତୋତେ ଛାଡ଼ିଲେ ସିନା !"

"ଧର ବାଡ଼ାଅ ତାକୁ ।" ସୁକାନ୍ତ କଥାରେ ଅନ୍ୟ ଦୁଇଜଣ ପିଲା ଧାଇଁ ଆସି ସୌରଭ ଉପରେ ଆକ୍ରମଣ କଲେ ।

ସୌରଭ ଚିନ୍ତା କଲା, ଏ ସମୟରେ ତା'ର କଣ କରିବା ଉଚିତ । ସେ ମାମୁଘରକୁ ବୁଲିବାକୁ ଆସିଛି, ଏଠି ତା'ର ଗଣ୍ଡଗୋଳ କରିବା ସମୀଚୀନ ହେବନି । କିନ୍ତୁ ପ୍ରତିରୋଧ ନ କଲେ ତ ସେମାନେ ତାକୁ ଲହୁଲୁହାଣ

କରିଦେବେ। ଆପଣା ଗୋଡ଼ହାତକୁ ଛାଟି ଯଥାସମ୍ଭବ ନିଜକୁ ସେମାନଙ୍କ କବଳରୁ ମୁକୁଳାଇବାକୁ ସେ ଚେଷ୍ଟା କଲା। ଅନ୍ୟ ଦୁଇପିଲାଙ୍କ ମଧ୍ୟରୁ ଜଣକୁ ଶକ୍ତ ଚାପୁଡ଼ାଏ ଓ ଅନ୍ୟ ଜଣଙ୍କ ଚୁଟି ଉପାଡ଼ି ପକାଇ ଗୁରୁଣ୍ଡି ଖସି ଆସିଲା ବାହାରକୁ। ତା'ପରେ ତଳୁ ଦୁଇମୁଠା ଶୁଖିଲା ବାଲି ଉଠାଇ ସେମାନଙ୍କ ମୁହଁକୁ ଫିଙ୍ଗିଦେଲା। ସେମାନେ ଆଖିରୁ ବାଲି କାଢ଼ି ସୌରଭକୁ ଖୋଜିଲା ବେଳକୁ ସେଠାରୁ ସେ ଦୌଡ଼ି ପଳାଇ ଯାଇଛି।

ମାମୁଘରେ ପହଞ୍ଚି ସବୁକଥା ଜଣେଇଲା ସୌରଭ।

"ବଦମାସ୍ ଟୋକା କ'ଣ କହିଲା, ତା' ବାପା ସରପଞ୍ଚ!! ସେ ଯାହା କଲେ ବି କେହି ତୋ ପିଠିରେ ପଡ଼ିବେନି। ହଉ, ଏବେ ମୋ ସହ ଚାଲିଲୁ, ଟିକେ ଦେଖିବା।" ରାଗରେ ଗର୍ଜି ଉଠି କହିଲେ ସୌରଭର ଅଜା ଅନନ୍ତଚନ୍ଦ୍ର।

ବିଳମ୍ବ ନ କରି ସେ ଗୋଟିଏ ପାଞ୍ଚହାତିଆ ବାଉଁଶ ଠେଙ୍ଗା ସହ ନାତିକୁ ସାଙ୍ଗରେ ଧରି ବାହାରି ପଡ଼ିଲେ।

ସୌରଭର ବାପା ଥିଲେ ଗ୍ରାମର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି। ତାଙ୍କ କ୍ରୋଧ ଦେଖି ଆଉ କେତେଜଣ ଗ୍ରାମବାସୀ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ଏକତ୍ର ହୋଇଗଲେ ସୁକାନ୍ତର ଘର ସାମନାରେ।

ସୌଭାଗ୍ୟକୁ ଘରେ ଥିଲେ ସରପଞ୍ଚ ନିର୍ଲୟବାବୁ।

"ଦାଦା, ଆଜି ଆପଣ ମୋ ଘରେ ! କଥା କ'ଣ ?" ଅନନ୍ତଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ଶୁଣ ନିର୍ଲୟ, ମୋର ନ୍ୟାୟ ଦରକାର। ପାରିବୁ ତ କର, ନ ହେଲେ ମୁଁ ଚାଲିଲି ଥାନାକୁ।" ଏତକ କହି ସୌରଭର ବାପା ଘଟଣାଟି ବର୍ଣ୍ଣନା କଲେ।

କଥାକୁ ଆଉ ଆଗକୁ ବଢ଼ାଇବାକୁ ଚାହୁଁ ନ ଥିଲେ ନିର୍ଲୟବାବୁ। ତୁରନ୍ତ ଡକେଇ ପଠେଇଲେ ପୁଅକୁ। ନିଜର ଚକ୍ରାନ୍ତ ପଦାରେ ପଡ଼ି ଯାଇଥିବାରୁ ଡରି ଡରି ବାପାଙ୍କ ପାଖରେ ପହଞ୍ଚି ଠିଆହେଲା ସୁକାନ୍ତ। ନିର୍ଲୟବାବୁ କହିଲେ,"କିରେ, ସାମାନ୍ୟ ଘଟଣାକୁ କେନ୍ଦ୍ର କରି କିଏ କ'ଣ ପ୍ରତିଶୋଧପରାୟଣ ହୋଇ ଏମିତି କାଣ୍ଡ କରେ? ତୋତେ ମୁଁ ଜିଲ୍ଲାର ସବୁଠାରୁ ଭଲ ହାଇସ୍କୁଲରେ ପାଠ ପଢ଼ଉଛି, ଏଇଥିପାଇଁ ଯେ ତୁ ଗୋଟିଏ ଭଲ ଛାତ୍ର ହୋଇ ସାଧାରଣ ଶିଷ୍ଟାଚାର ଶିଖିବୁ। ନମ୍ର, ଭଦ୍ରଆଚରଣ କରିବା ସହ ସଂସ୍କାରସମ୍ପନ୍ନ ମଣିଷଟେ ହବୁ। ମୋର କୁଳ ଉଜ୍ଜ୍ୱଳ କରିବୁ। ହେଲେ ତୋର ଏ ଅବିବେକୀ ଅପରାଧପ୍ରବଣ କାର୍ଯ୍ୟ ଯୋଗୁଁ ମୋ ମୁଣ୍ଡ ତଳକୁ ହୋଇଯାଇଛି।

ଯଦି ତୁମମାନଙ୍କ ମଧ୍ୟରେ କୌଣସି ଭୁଲ୍ ବୁଝାମଣା ହେଲା, ତେବେ ତୁ ସେକଥା ଶ୍ରେଣୀ ଶିକ୍ଷକଙ୍କୁ ଜଣାଇ ପାରିଥା'ନ୍ତୁ, କିନ୍ତୁ ସେମିତି ନ କରି ମୂର୍ଖ, ବାଳୁଙ୍ଗା



ପିଲାଙ୍କ ସହ ମିଶି ଜଣେ ସହପାଠୀକୁ ଆକ୍ରମଣ କଲୁ। ଯଦି ଆଜି ସେ ପିଲାର୍ କିଛି ହୋଇ ଯାଇଥା'ନ୍ତା, ତେବେ ଜେଲ୍‌ର ପାଚେରୀ ଭିତରେ ବେଶ୍ ଖୁସିରେ ରହିଥାନ୍ତୁ ବୋଧହୁଏ, କହିଲୁ, ତୋ'ପିଠିରେ ପଡ଼ିଥାନ୍ତା କିଏ ? ଥରେ ଚିନ୍ତା କଲୁ, ସେତେବେଳେ ମୋର, ତୋ'ବୋଉର ଆଉ ସୌରଭ ବାପାମା'ଙ୍କର ମାନସିକ ଅବସ୍ଥା କ'ଣ ହୋଇଥାନ୍ତା ?"

ପୁଅକୁ ଚାହିଁ କ୍ଷୋଭ ଆଉ ବିରକ୍ତିରେ କହୁଥିଲେ ସରପଞ୍ଚ ମହାଶୟ। "ଆରେ ସତକଥା ତ ! ସେ ତ ଏତେ କଥା ଚିନ୍ତା କରି ନ ଥିଲା ଜମାରୁ।" ମନେମନେ ଭାବିଲା ସୁକାନ୍ତ।

"ଛାଡ଼ ସେକଥା, 'ବିଦ୍ୟା ଦଦାତି ବିନୟମ୍'। ଅର୍ଥାତ୍ ବିଦ୍ୟା ନମ୍ରତା ଶିଖାଏ। ଦୁହେଁ ଏକା ସ୍କୁଲ୍‌ରେ, ଗୋଟିଏ ଶ୍ରେଣୀରେ ପାଠ ପଢୁଛ, ଏତିକି ଶିଖିନ ? ଝଗଡ଼ା ଭୁଲି ଏବେଠାରୁ ତୁମେ ମିଳିମିଶି ଚଳିବ। ଆବଶ୍ୟକ ସ୍ଥଳେ ପରସ୍ପରକୁ ସାହାଯ୍ୟ, ସହଯୋଗ କରିବ।" କହିଲେ ବାପା।

ବାପାଙ୍କ ଆଦେଶରେ ସୁକାନ୍ତ ସୌରଭର ହାତ ଧରି ଭୁଲ୍ ମାଗିଲା। ସୌରଭର ଆଖି ଛଳଛଳ ହୋଇଗଲା। ସେ କୁଣ୍ଢାଇ ପକାଇଲା ସୁକାନ୍ତକୁ। ପରେ ସୁକାନ୍ତର ବୋଉ ପ୍ରସ୍ତୁତ କରିଥିବା ଛେନାପୁର ଦିଆ ପିଠା ଓ ମିଠା ନେଇ ଆସିଲେ। ଦୁହେଁ ଏକାଠି ଖାଇଲେ ଖୁସିରେ। ବନ୍ଧୁ ବନ୍ଧୁ ମଧ୍ୟରେ ପ୍ରତିଶୋଧପରାୟଣ ମନୋଭାବ ରହିଲେ ବିଦ୍ୟାଳୟର ପରିବେଶ ଦୂଷିତ ହୋଇଯାଏ-- ଏହା ସେଦିନ ହୃଦୟଙ୍ଗମ କଲା ସୁକାନ୍ତ।

*ମାମୁରିଆ, ଛେଣ୍ଡିପଦା, ଅନୁଗୁଳ- ୭୫୯୧୨୪*



## ଏସବୁ ସମ୍ପୂର୍ଣ୍ଣ ଭାବେ ନଷ୍ଟ ହୋଇ ମାଟିରେ ମିଶିବା ପର୍ଯ୍ୟନ୍ତ କେତେ ସମୟ ଲାଗେ, ତାହା ନିମ୍ନରେ ପ୍ରଦତ୍ତ ହେଲା।

୧. କାଗଜ ରୁମାଲ- ୨ରୁ ୩ ସପ୍ତାହ
୨. କଦଳୀ ଚୋପା- ୨ରୁ ୩ ସପ୍ତାହ
୩. କାଗଜ ବ୍ୟାଗ୍- ୧ ମାସ
୪. ଖବର କାଗଜ ଇତ୍ୟାଦି- ୧ମାସ ୧୫ ଦିନ।
୬. କମଳା, ସେଓ ଚୋପା- ୩ମାସ
୭. ପ୍ଲାଏଉଡ୍- ୧ରୁ ୩ ବର୍ଷ
୮. ଉଲ୍ ମୋଜା- ୧ରୁ ୫ ବର୍ଷ
୯. ଚମଡ଼ା ଜୋତା- ୨୫ରୁ ୩୦ ବର୍ଷ
୧୦. ପ୍ଲାଷ୍ଟିକ୍ କପ୍, ଜୋତାର ତଳ ଚମଡ଼ା- ୫୦ରୁ ୬୦ ବର୍ଷ
୧୧. ଆଲୁମିନିୟମ୍ କ୍ୟାନ୍, ପ୍ଲାଷ୍ଟିକ୍ ବ୍ୟାଗ୍ ଓ ବୋତଲ- ୨୦୦ରୁ ୫୦୦ ବର୍ଷ

ଏସବୁ ଲକ୍ଷ୍ୟ କରି, ଚିନ୍ତା କରନ୍ତୁ ଆମେ ପ୍ରାକୃତିକ ପରିବେଶକୁ ପ୍ରଦୂଷିତ ହେବାରୁ କଅଣ ରକ୍ଷା କରିପାରିବାନି ? ମାନବ ସମାଜର ଭବିଷ୍ୟତ ପାଇଁ ଆମକୁ ଜିନିଷର ବ୍ୟବହାର ଭାବିଚିନ୍ତି କରିବାକୁ ପଡ଼ିବ।

---

**ଅଛି-ନାହିଁର ଉତ୍ତର--**୧) ମଝି ପିଲାଟିର ବେଲ୍ଟ ରଂଗ କଳା, ୨) ତା' ପର ପିଲାଟିର ଛାତି ଜାମା କାଜ ସିଧା, ୩) ତା' ପର ପିଲାଟିର ମୁଣ୍ଡ ବାଳ ଅସମାନ, ୪) ଗଛ ପାଖରେ ଚଢ଼େଇ ଉଡୁଛି, ୫) ଡାହାଣ ପାଖ ପିଲାଟିର କଳା ମୋଜା ନାହିଁ, ୬) ଗଛ ମଝିରେ କିଛି ପତ୍ର ନାହିଁ, ୭) ପିଲାଟିର ଜାମାରେ ଗୋଟିଏ ଫୁଲ ନାହିଁ ।

# ସୂର୍ଯ୍ୟ ଶିଶିର (Drosera)

ଶ୍ରୀ ପ୍ରତାପ କିଶୋର ମହାନ୍ତି

ସୂର୍ଯ୍ୟ ଶିଶିର (Drosera or Sundew) ଏକ କୀଟଭୋଜୀ ଆବୃତବୀଜୀ ସପୁଷ୍ପକ ଉଦ୍ଭିଦ । ଏହା କ୍ଷୁଦ୍ର କ୍ଷୁପ (Herb) ଜାତୀୟ ଉଦ୍ଭିଦ ।

ପ୍ରଧାନତଃ ଚାରୋଟି ଜାତିର ସୂର୍ଯ୍ୟ ଶିଶିର ଦେଖାଯାଆନ୍ତି । ଏମାନଙ୍କ ମଧ୍ୟରୁ Drosera Indica, Drosera Burmani ଏବଂ Drosera Pelta ଭାରତରେ ଦେଖାଯାଆନ୍ତି । ମାତ୍ର Drosera Rotundifolia ଗ୍ରେଟ୍‌ବ୍ରିଟେନ୍‌ର ସନ୍ତସନ୍ତିଆ, କାଦୁଆ (Peats and Bugs) ସ୍ଥାନମାନଙ୍କରେ ଦେଖାଯାଆନ୍ତି । ସୂର୍ଯ୍ୟଶିଶିର ସମସ୍ତ ମହାଦେଶରେ ଦେଖିବାକୁ ମିଳନ୍ତି; ମାତ୍ର ଅଷ୍ଟ୍ରେଲିଆରେ ବହୁଳ ପରିମାଣରେ ଦେଖାଯାଆନ୍ତି । ବିଭିନ୍ନ ଜାତିର ସୂର୍ଯ୍ୟଶିଶିର ସେମାନଙ୍କର ପତ୍ରର ଆକୃତିରେ ପାର୍ଥକ୍ୟ ପ୍ରଦର୍ଶନ କରନ୍ତି । ସୂର୍ଯ୍ୟଶିଶିରର ପତ୍ର ଲମ୍ବ ଓ କମ୍ ଓସାରିଆ । ସବୁ ଜାତିର ସୂର୍ଯ୍ୟଶିଶିର କେତେ ଇଞ୍ଚ ଉଚ୍ଚତାର କ୍ଷୁଦ୍ର କ୍ଷୁପ (Small herbs) ଜାତୀୟ ଉଦ୍ଭିଦ । Drosera Burmani ଭାରତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ସାଧାରଣ ଧାନଚାଷ ଜମିଗୁଡ଼ିକରେ ଦେଖାଯାଆନ୍ତି । ଏଗୁଡ଼ିକର ଗୋଲାପ ପାଖୁଡ଼ାସଦୃଶ୍ୟ ଚମସାକାର ପତ୍ର ଗୁଡ଼ି (Spathulate radical leaves) କାଣ୍ଡ ଚାରିପଟେ ଘେରି ରହିଥାଆନ୍ତି ।

Drosera Peltata ପଶ୍ଚିମ ହିମାଳୟରେ ଏବଂ ଖାସି ପାର୍ବତ୍ୟାଞ୍ଚଳରେ ଦେଖାଯାଆନ୍ତି । ଏହାର ଲାଲ୍ ଲାଲ୍ ପତ୍ରର ପତ୍ରଫଳକମାନ ଚେପ୍‌ଟା ଓ ମଣ୍ଡଳାକାର । ଫଳରେ ଉପରିଭାଗର କେତେକ ସରୁ ସରୁ ଗ୍ରନ୍ଥି ରୋମ (Grandular Hairs) ଭରି ରହିଥାଏ । ସେଗୁଡ଼ିକୁ କର୍ଷିକା କୁହାଯାଏ ।ଏହି କର୍ଷିକାମାନଙ୍କରେ ଥିବା ଗ୍ରନ୍ଥିମାନଙ୍କରୁ ଗୋଟିଏ ଅଠାଳିଆ ହଜମକାରୀ ରସ ବିନ୍ଦୁ ବିନ୍ଦୁ ହୋଇ ବାହାରେ, ଯାହା ସୂର୍ଯ୍ୟ କିରଣରେ ଶିଶିରବିନ୍ଦୁ ପରି ଚକ୍‌ଚକ୍ କରେ । ତେଣୁ ଏଗୁଡ଼ିକୁ 'ସୂର୍ଯ୍ୟଶିଶିର' କୁହାଯାଏ । କ୍ଷୁଦ୍ରକୀଟମାନେ ଶିଶିର ବିନ୍ଦୁ ପରି ଉଜ୍ଜ୍ୱଳ ଦିଶୁଥିବା ଏହି ରସ ପ୍ରତି ଆକୃଷ୍ଟ ହୋଇ ପତ୍ରଫଳକ ଉପରକୁ ଆସନ୍ତି । ସେମାନେ ପତ୍ର ଉପରକୁ ଆସିବାକ୍ଷଣି ପୁଷ୍ଟିସାର ସଚେତନ (Protein Sensitive) କର୍ଷିକାମାନ ନଇଁପଡ଼ି କୀଟମାନଙ୍କୁ ପତ୍ର ଉପରେ ଚାପି ଧରନ୍ତି । ଅଠାଳିଆ ପାଚକ ରସରେ ସେମାନେ ଲାଗି ଯାଆନ୍ତି ଓ ପଳାଇ ନ ପାରି ମରିଯାଆନ୍ତି । ପରେ ପାଚକ ରସ ଦ୍ୱାରା ସେମାନେ କ୍ରମେ କ୍ରମେ ହଜମ ହୋଇ ପତ୍ର ଦ୍ୱାରା ଶୋଷିତ ହୋଇଥାଆନ୍ତି ।

*ଦେଉଳସାହି (ସାଇ ମନ୍ଦିର ସମ୍ମୁଖ), ତୁଳସୀପୁର, କଟକ-୮*





# ସୁରମଣି

ଶ୍ରୀ କାହ୍ନୁଚରଣ ପାଣିଗ୍ରାହୀ

ଖବର କାଗଜ କହିଲା ସେଦିନ
ନିରବିଲେ ସୁରମଣି
ନିରବିଗଲା କି ? ସାରା ବିଶ୍ୱରେ
ଗୀତଗୋବିନ୍ଦ ଧ୍ୱନି ।
ଦଶ ଅବତାର ଆଦ୍ୟ ପଦର
ପ୍ରଳୟ ପୟୋଧି ଜଳେ
ଭାସି ବୁଲୁଥିଲା ସେ ଗୀତିକାବ୍ୟ
ଧରିଥିଲ କଉଶଳେ ।
ସତେକି ସେ ଥିଲା ଓଡ଼ିଶା ମାଟିର ବେଦ,
ଉଦ୍ଧରିଥିଲ ଅବତାର ତୁମେ
ସଞ୍ଚାରି ସ୍ୱରବୋଧ ।
ଯେଉଁ ବୋଧ ତୁମେ ସଞ୍ଚାର କଲ
ସୁର, ତାଳ, ଲୟ ଦେଇ
ଶାସ୍ତ୍ରୀୟ ତାହା ସଙ୍ଗତ ଯା'ର
ତୁଳନା କେଉଁଠି ନାହିଁ ।
'ଗୋଧୂଳି ଗଗନ ତଳେ' ପୁଣି
କେବେ 'ବନ ପକ୍ଷୀର ସୁରେ'
ଅଥବା ଯେଉଁଠି ସୁଷମା ଅଙ୍ଗୁ
ଜ୍ୟୋଛନାଟି ଝରିପଡ଼େ,
କଳାକାର ତୁମେ ଗାଇଥିଲ ଗୀତ
ହୋଇ ତ ପାରିନ ମୂକ
କେଡ଼େ ଶରଧାରେ ଶୁଣିଥିଲ ତୁମେ
ନାଲି ନାଲି ସେଇ କୃଷ୍ଣଚୂଡ଼ାର ଡାକ ।
କର୍ଣ୍ଣାଟକର ମଳୟ ଶିଖରୁ
ତୁମ ସଙ୍ଗୀତ ଆସି
ଦେବଭୂଇଁ ଏଇ ଓଡ଼ିଶା ମାଟିରେ
ଏମିତି ଗଲା ଯେ ମିଶି
ଝଟକି ଉଠିଲା ଆଭା
ଚମ୍ପକଟିଏ ସେ ଆଦରିଲା ତାକୁ
ପଦ୍ମାବତୀର ଗଭା,
ଗୀତଗୋବିନ୍ଦର ନାଆଁ ନେଇ ତୁମେ
ଯଦି ହୁଅ ଜୟଦେବ
ପଦ୍ମାବତୀର ଗୌରବ ତେବେ
କୁହ କାହା ପାଖୁ ଯିବ ?
ହେଲେ ହେବେ ସେଇ
ସଂଯୁକ୍ତା ପାଣିଗ୍ରାହୀ
ତୁମ ଦୁହିଁଙ୍କର ଯୁଗଳବନ୍ଦୀକୁ
ବିଶ୍ୱେ ଉପମା ନାହିଁ ।

(ପ୍ରଖ୍ୟାତ କଣ୍ଠଶିଳ୍ପୀ ରଘୁନାଥ ପାଣିଗ୍ରାହୀଙ୍କ ସ୍ମୃତି ଉଦ୍ଦେଶ୍ୟରେ)

*ବିରୁହାଁ, ବଲାଙ୍ଗୀର, ଭାଯ୍ପ-ଧାମନଗର, ଭଦ୍ରକ*



# ଶେଷରେ ଜେଜେ ହିଁ ଘୋଡ଼ା ହେଲେ

ଶ୍ରୀ ଶିବ ପ୍ରସାଦ ମିଶ୍ର

ବର୍ଷକର ଛୁଆ ଏହି ନାତିଟା । ଆଜି ତାର କ'ଣ ହୋଇଛି କେଜାଣି, ଅଧଘଣ୍ଟେ ହେବ ସେ କେବଳ କାନ୍ଦୁଛି । କାନ୍ଦୁଛି ଯେ କାନ୍ଦୁଛି । ତୁହାଇ ତୁହାଇ କାନ୍ଦୁଛି । ବଡ଼ ଜୋର୍‌ରେ ରାହା ଧରି କାନ୍ଦୁଛି । ଯେତେ ବୁଝେଇଲେ ବି ବୁଝୁନି । ତା'କାନ୍ଦ ଥମିବାର ନାଁ ଧରୁନି ।

ତେଣୁ ଜେଜେ ଚିନ୍ତିତ । ତାଙ୍କ ମନରେ ବିରାଟ ଭାଳେଣି । ପିଲାଟାର କାନ୍ଦ କେମିତି ଜଲଦି ବନ୍ଦ ହେବ, ତାକୁ ନେଇ ତାଙ୍କ ମନରେ ଅନେକ ଚିନ୍ତା ।

ହଠାତ୍ ଜେଜେଙ୍କ ମନକୁ ଉପାୟଟେ ଦିଶିଲା । ଏମିତି ଛୋଟ ଛୋଟ ନାତିମାନଙ୍କ କାନ୍ଦକୁ କମେଇବା ପାଇଁ ଘୋଡ଼ାଟେ ଦରକାର । ଘୋଡ଼ାଟେ ଜୁଟିଗଲେ ସବୁ କାମ ଖତମ୍ । ପିଲାଙ୍କ କାନ୍ଦ ଛୁ ମନ୍ତର୍ ହୋଇଯିବ । ସେମାନେ ଚୁପ୍‌ଚାପ୍ ହୋଇଯିବେ ।

ଘୋଡ଼ା କଥାଟାକୁ ଜେଜେ ଗମ୍ଭୀରତାର ସହ ବିଚାର କଲେ । ସେ ଏମିତି ସେମିତି ଜେଜେଙ୍କ ନାତି ନୁହଁ । ଜଣେ କୋଟିପତିଙ୍କ ନାତି । ତେଣୁ ସେ ଯାହିତାହି ଘୋଡ଼ାରେ ବସିବନି ।

ଏଣୁ ନାତିଟା ପାଇଁ ବିଦେଶୀ ଘୋଡ଼ାଟେ ଦରକାର । ଘୋଡ଼ାଟା ଆମେରିକା କିମ୍ବା ୟୁରୋପର ହେବା ନିହାତି ଜରୁରୀ ।

ଏହି କଥାକୁ ନେଇ ଜେଜେ ନିଜ ବୁଦ୍ଧିକୁ ଖଟେଇଲେ । ଚାରିଆଡ଼େ ଫୋନ୍ ଲଗେଇଲେ । ବିଦେଶର ଯେଉଁ ଜାଗାଟା ମନେପଡ଼ିଲା- ସେଠାକୁ ଫୋନ୍ କଲେ, "ମୋର ଗୋଟିଏ ସୁନ୍ଦର ଘୋଡ଼ାଟେ ଦରକାର । ଘୋଡ଼ାଟା ଯେପରି ପାଞ୍ଚ ମିନିଟ୍‌ରେ ମୋ ପାଖେ ପହଞ୍ଚିବ ।" ହେଲେ ସବୁଆଡୁ ସେହି ଗୋଟିଏ ଉତ୍ତର, "ସାର୍ ! ଆମେ ଆମ ଦେଶର ସୁନ୍ଦର ସୁନ୍ଦର ଘୋଡ଼ାମାନଙ୍କୁ ଆପଣଙ୍କ ପାଖକୁ ନିଶ୍ଚୟ ପଠାଇବୁ, ପୁଣି ଉଡ଼ାଜାହାଜରେ । ହେଲେ ସେମାନେ ଆପଣଙ୍କ ନିକଟରେ ପହଞ୍ଚିବା ବେଳକୁ ବହୁତ ଡେରି ହୋଇଯିବ । କମ୍‌ରେ ଦୁଇଦିନ । ସେ ପର୍ଯ୍ୟନ୍ତ କ'ଣ ଆପଣଙ୍କ ନାତିଟା କାନ୍ଦୁଥିବ?

ଭଲ ହେବ ଆପଣ ଗୋଟେ ସ୍ୱଦେଶୀ ଘୋଡ଼ାଟେ ଯୋଗାଡ଼ କରନ୍ତୁ ଆପଣଙ୍କ ଓଡ଼ିଶାରୁ କିମ୍ବା ଭାରତର ଅନ୍ୟ ରାଜ୍ୟରୁ । ଓଡ଼ିଶା ହେଲେ ଭଲ । ଭାରତର ଅନ୍ୟ ଅଞ୍ଚଳ ହେଲେ ଉତ୍ତମ । ଘୋଡ଼ାଟା ଯେଉଁଠାରୁ ହେଲେ ବି ଆପଣଙ୍କ କାମଟା ଜଲଦି ଓ ସହଜରେ ହୋଇଯବ ।"

ଜେଜେ ପୁଣି ଚିନ୍ତା କଲେ । ସେ ଘୋଡ଼ା କେଉଁଠାରୁ ମଗେଇବେ ? ଓଡ଼ିଶାରୁ ନାଁ ଓଡ଼ିଶା ବାହାରୁ! ସେ ବୁଝିପାରିଲେ ଘୋଡ଼ା ଯେଉଁଠାରୁ ମଗେଇଲେ ବି ସେଥିରେ ଡେରିର ଆଶଙ୍କା ଅଛି । ସେଥିରେ ହଠାତ୍ ପରିସ୍ଥିତିଟାକୁ ସମ୍ଭାଳିନେବା ସମ୍ଭବ ନୁହେଁ । ବରଂ ସେତିକିବେଳକୁ ନାତିଟା କାନ୍ଦି କାନ୍ଦି ବେଦମ୍ ହୋଇଯାଇଥିବ ।

ଜେଜେ ତେଣୁ ଏହି ଅସଲି ଘୋଡ଼ାର ଚିନ୍ତାରୁ ଓହରିଗଲେ । ଗୋଟେ ନକଲି ଘୋଡ଼ାକୁ କଳ୍ପନା କଲେ । ଏହି ଘର ଭିତରୁ ଘୋଡ଼ାଟେ ପ୍ରସ୍ତୁତ କରାଯାଉ । କେହି ଜଣେ ମଣିଷ ହାଲ୍‌କୁ ଘୋଡ଼ା ହେଇଯାଉ । ଘୋଡ଼ାଟା ନକଲି ହେଉ ପଛକେ ସେଥିରେ ପରିସ୍ଥିତିକୁ ଆୟତ୍ତ କରିହେବ । ତା' ଅବିରାମ୍ କାନ୍ଦିବାରୁ ନାତିଟାକୁ ରକ୍ଷା କରିହେବ ।

ହେଲେ ଜେଜେଙ୍କ ସାମନାରେ ସମସ୍ୟାଟେ। ଘରୁ କିଏସେ ନାତି ପାଇଁ ଘୋଡ଼ା ପାଲଟିବ ?

ଜେଜେଙ୍କ ମନକୁ ମଜାଦାର କଥାଟେ ଆସିଲା। ସଙ୍ଗେ ସଙ୍ଗେ ସମାଧାନର ରାସ୍ତା ଖୋଲିଗଲା। ଜେଜେ ଠିକ୍ କଲେ ତାଙ୍କ ଘରର ସାହାଯ୍ୟକାରୀ ଶିବୁକୁ ହିଁ ଘୋଡ଼ା ହେବାକୁ କୁହାଯିବ। ସେ ହିଁ ଏଥିପାଇଁ ଉପଯୁକ୍ତ ପାତ୍ରଟେ।

ଶିବୁକୁ ଏହି ବିଷୟ ନେଇ ପ୍ରସ୍ତାବଟେ ଦିଆଗଲା। ସେ ମଧ୍ୟ ଏହି ପ୍ରସ୍ତାବରେ ଖୁସି। କେହି କିଛି କହିବା ପୂର୍ବରୁ ସେ ପ୍ରସ୍ତାବଟାକୁ ଖୁସିରେ ଗ୍ରହଣ କରିନେଲା। ଦେଖୁ ଦେଖୁ ସେ ସେଠାରେ ଆଣ୍ଠେଇ ପଡ଼ିଲା। ଘୋଡ଼ାଟିଏ ହୋଇଗଲା। ଜେଜେ ବି ଖୁସ୍। ଏଥର ତାଙ୍କର ଆଉ ଚିନ୍ତା ନାହିଁ। ଶିବୁ ଉପରେ ନାତିଟାକୁ ବସେଇଦେଲେ ତାର କାନ୍ଦ ବନ୍ଦ ହୋଇଯିବ। ସେ ନିଶ୍ଚିନ୍ତ ହୋଇଯିବେ।

ଶିବୁର ପିଠିରେ ନାତିଟାକୁ ବସେଇ ଦିଆଗଲା। ଶିବୁ ଆଣ୍ଠେଇ ଆଣ୍ଠେଇ ଆଗକୁ ଚାଲିଲା। ହାତ ଦୁଇଟାକୁ ଉଠେଇ ପକେଇ ହ୍ରେଷାରବ ଦେଲା। ହେଲେ ନାତିର କାନ୍ଦ ବନ୍ଦ ହେଉନି। ସେ ସେମିତି ପୂର୍ବପରି କାନ୍ଦୁଛି।

ନାତିର କାନ୍ଦ ଅବ୍ୟାହତ ରହିଛି। ସେଥିପାଇଁ ସମସ୍ତେ ବିଚଳିତ। କିଛି ଗୋଟାଏ ନୂଆ ଉପାୟ ଖୋଜିବାରେ ବ୍ୟସ୍ତ। ଠିକ୍ ସେତିକିବେଳେ ଜେଜେମା ସେଠାରେ ହାଜର ହୋଇଗଲେ। ପିଲାଟାର ଅନବରତ କାନ୍ଦରେ ସେ ମଧ୍ୟ ବିଚଳିତ। ଉପସ୍ଥିତ ଥିବା ସମସ୍ତଙ୍କ ପାଇଁ ତାହାଙ୍କର ପ୍ରଚଣ୍ଡ ରାଗ। ସେ ମନେମନେ ଭାବୁଛନ୍ତି, "ଏଠାରେ ଏତେ ଲୋକ; ଅଥଚ ପିଲାଟା କାନ୍ଦି କାନ୍ଦି ନୟାନ୍ତ ହୋଇଗଲାଣି। କେହି ଜଣେ ବି ତା' କାନ୍ଦକୁ କମେଇ ପାରୁନାହାନ୍ତି।"

ସେତେବଳକୁ ଜେଜେ କାନ୍ଦ କାନ୍ଦ ହୋଇ-ଗଲେଣି; କିନ୍ତୁ ଜେଜେମାଙ୍କୁ ଦେଖି ତାଙ୍କ ମନରେ ଭରସାଟେ ଆସିଲା। ଏହି କ୍ଷେତ୍ରରେ ଜେଜେମା ହିଁ କିଛି କରିପାରିବେ। ତେଣୁ ସେ ଜେଜେମାଙ୍କୁ ଚଟାପଟ୍ ଅନୁରୋଧଟେ କଲେ, "ପିଲାଟାର କାନ୍ଦ ପାଖରେ ପାଖରେ ଆମେ ସମସ୍ତ ହାରିଗଲୁ। ସେଥିପାଇଁ ତମେ କିଛି ଗୋଟେ କର।"

ଜେଜେମା ଏଥର ପାଟି ଖୋଲିଲେ। କହିଲେ, "ଏଥିପାଇଁ ଶିବୁର ଚେଷ୍ଟା ଚଳିବନି। ସେଥିପାଇଁ ତମକୁ ହିଁ ଘୋଡ଼ା ହେବାକୁ ପଡ଼ିବ।"

ଜେଜେ ଆଶ୍ଚର୍ଯ୍ୟ। ସେ କେମିତି ତାଙ୍କ ନାତି ପାଇଁ ଘୋଡ଼ାଟେ ହେବେ ? ସେ ଏହି ସହରର ଜଣେ କୋଟିପତି। ଯଥେଷ୍ଟ ନାଁ ଥିବା ଲୋକଟେ। ଏପରି ଜଣେ ଧନୀ, ନାମଜାଦା ଲୋକଟେ କଦାପି କାହାରି ପାଇଁ ଘୋଡ଼ା ହେଇ ପାରିବେନି। ଏଇଟା ଅସମ୍ଭବ।"

ଜେଜେଙ୍କ ମନରେ କିଛି ସ୍ୱାଭିମାନ ଥିଲା। କିଛି ଅହଙ୍କାର ଥିଲା। ସେ ଜେଜେମାଙ୍କ ପ୍ରସ୍ତାବକୁ ରୋକ୍ଠୋକ୍ ମନା କରିଦେଲେ; କିନ୍ତୁ ଜେଜେମା



ଛାଡ଼ିବାବାଲା ନୁହଁ । ସେ ଜେଜେଙ୍କୁ ବାଧ୍ୟ କଲେ ଘୋଡ଼ା ହେବା ପାଇଁ ।

ଜେଜେଙ୍କ ପାଇଁ ଘୋଡ଼ା ହେବା ବ୍ୟତୀତ ଅନ୍ୟ କିଛି ଉପାୟ୍ ନ ଥିଲା । ସେ ଅଗତ୍ୟା ନାତି ପାଇଁ ଘୋଡ଼ୋଟେ ହୋଇଗଲେ । ତାଙ୍କ ପିଠିରେ ନାତିକୁ ବସେଇ ଦିଆଗଲା । ବାସ୍ ସେତିକି । ତା'ପରେ ସବୁ ଠିକ୍‌ଠାକ୍ । ନାତିର ସବୁ କାନ୍ଦ ବନ୍ଦ ।

ଜେଜେ ତାଜୁବ୍ । ଅନ୍ୟମାନେ ଛାନିଆ ।

ସମସ୍ତେ ଜେଜେମାଙ୍କୁ କହିଲେ, "ଆପଣ ଗୋଟେ ଯାଦୁ ଚଳେଇଦେଲେ । କମାଲ୍‌ଟେ କରିଦେଲେ ।"

ଜେଜେମା ହସିଦେଲେ । କହିଲେ, "ଏଇଟା ତାଙ୍କର କୌଣସି ଯାଦୁ କିମ୍ବା କମାଲ୍ ନୁହଁ । ଏଇଟା ହିଁ ପାଠ । ଚିରନ୍ତନ ସତ୍ୟଟେ । ନାତିନାତୁଣୀମାନେ ସେମାନଙ୍କ ଜେଜେ/ଜେଜେମାଙ୍କ ପିଠିକୁ ଠିକ୍ ରୂପେ ଚିହ୍ନିପାରିଥା'ନ୍ତି । ବିଶେଷତଃ ଜେଜେମାନଙ୍କର । ସେ ପିଠିରେ ଲେସି ହୋଇଥିବା ସ୍ନେହକୁ ସେମାନେ ଅନ୍ୟ କାହା ପିଠିରୁ ପାଆନ୍ତିନି । ତେଣୁ ଜେଜେଙ୍କ ପିଠିଟା ହିଁ ସେମାନଙ୍କ ପ୍ରଥମ ପସନ୍ଦ ।

ଆଉ ଗୋଟେ କଥା । ଜେଜେଙ୍କ ପିଠିର ସ୍ନେହ ପାଇଁ ଅଝଟ ହେଉଥିବା ଶିଶୁମାନଙ୍କ ପାଇଁ ପ୍ରତ୍ୟେକ ଜେଜେ ଘୋଡ଼ା ହେବା ପାଇଁ ବାଧ୍ୟ । ଚାହେଁ ସେ କାଙ୍ଗାଳ ହୁଅନ୍ତୁ ବା କୋଟିପତି । କାରଣ ତାହାର ଫରକ ପିଲାମାନଙ୍କ କଅଁଳ ମନ ପାଇଁ କିଛି ନୁହେଁ ।

*ରକ୍ତଭଣ୍ଡାର, ଭଞ୍ଜନଗର, ଗଞ୍ଜାମ*





ସଙ୍କଟପୂରିତ ଘୋର
　　ଭବ ସିନ୍ଧୁ ଜଳେ
ଏକମାତ୍ର କର୍ଣ୍ଣଧାର
　　ତାରୁ ତୁ ସକଳେ
ତୋର ମଙ୍ଗଳ ବିଧାନ
　　କରିଅଛି ମରଣକୁ
ଅମୃତ ସୋପାନ

-ଭକ୍ତକବି ମଧୁସୂଦନ

"ବିରାଟ ବିଶ୍ୱ ଭିତରେ ସେଇ ଟିକକ ଥାନ ଥିଲା ମୋର ଶୈଶବର ସ୍ୱପ୍ନପୁରୀ । ମାଟିର ଘର, କେଉଁଠି ଗୋଟିଏ ହେଲେ ଝରକା ନ ଥାଏ । ଚାଳରେ ଅଙ୍କାବଙ୍କା କଣ୍ଟା ବାଉଁଶର ରୁଅ ।" -(ଜୀବନ ତରଙ୍ଗ)



ସେଦିନ ଥିଲା ୧୫/୨/୧୯୦୬ ମସିହା ଫେବୃଆରୀ ୧୫ ତାରିଖ । ସେ ଜନ୍ମବେଳେ ପୁଣି ହଜିଗଲେ । ନଳା ଭିତରେ ପଡ଼ିଯାଇଥିଲେ; କିନ୍ତୁ ନିରାପଦରେ ଥିଲେ । କେମିତି ଈଶ୍ୱର ରକ୍ଷା ନ

କରିଥା'ନ୍ତେ? ୮୮ ବର୍ଷର ଦୀର୍ଘ ଦିନର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସବୁ ସମ୍ପୂର୍ଣ୍ଣ କରିବାର ଥିଲା ତାଙ୍କର ! ତେଣୁ ଈଶ୍ୱର ଶିଶୁଟିକୁ ରଖିଲେ ।

"ଚାହୁଁ ଚାହୁଁ ସୁନୀଳ ସମୁଦ୍ରେ ତୋ ସଲିଳ
ଦେଲୁ ତୁ ଢାଳି ମହାପୁରେ
ଅନନ୍ତ ସିନ୍ଧୁ ସଙ୍ଗେ ମିଶିଗଲୁ କି ରଙ୍ଗେ
ସକଳ ଭେଦ ଫିଙ୍ଗି ଦୂରେ ।"
-(ନଦୀ ପ୍ରତି- ରାଓ)

ମାସକୁ ଦୁଇଟଙ୍କା ଉ.ପ୍ରା. ବୃତ୍ତି ତାଙ୍କୁ ମିଳୁଥିଲା । 'Alexander and the Rubber' ଇଂରାଜୀ ଅଭିନୟରେ ସେ ଡକାୟତର ଭୂମିକା ନେଇଥିଲେ । କ୍ଲାସ୍‌ରେ ପ୍ରଥମ ହେଉଥିବା ଯୋଗୁଁ ତାଙ୍କୁ ଗୋଟେ ଚାମ୍ବର୍ସ ଡିକ୍ସିନାରୀ ପୁରସ୍କାର ମିଳିଥିଲା । ସେଇଟା ସେ ଶେଷ ପର୍ଯ୍ୟନ୍ତ ସାଇତି ରଖିଥିଲେ ।

୧୯ ବର୍ଷରେ ମାସକୁ ୨୦ଟଙ୍କା ହିସାବରେ ଚାକିରି ଆରମ୍ଭ କଲେ । ଶିକ୍ଷକ ଓ ଛାତ୍ରୀମାନଙ୍କୁ ସୂତାକଟା ଶିଖାଇଲେ । ବିବାହ କଲେ -୧୯ ବର୍ଷର ବରକୁ ୯ ବର୍ଷର କନ୍ୟା । ତାଙ୍କୁ ଦୁଇଥର ମ୍ୟାଟ୍ରିକୁଲେସନ୍ ପାଶ୍ କରିବାକୁ ପଡ଼ିଲା । ଗୋଟିଏ ଜାତୀୟ ବିଦ୍ୟାଳୟରୁ ଓ ଆରଟି ଇଂରାଜୀ ସରକାରଙ୍କ ସ୍କୁଲ୍‌ରୁ । ୧୯୩୧ରେ ବାରିପଦାରେ ଶିକ୍ଷକତା । ଉତ୍ସାହୀ ଯୁବକମାନଙ୍କୁ ନେଇ ଗ୍ରାମ ରାସ୍ତାଘାଟର ଉନ୍ନତିକଳ୍ପେ 'ନାରାୟଣ ସମିତି' ଗଠନ କଲେ ।

୧୯୩୩-୩୪ରେ 'ଆହେ ଦୟାମୟ ବିଶ୍ୱବିହାରୀ' ପ୍ରାର୍ଥନା ସଙ୍ଗୀତଟି ସାହିତ୍ୟ ସୋପାନର ଦ୍ୱିତୀୟ ଭାଗରେ ସ୍ଥାନ ପାଇଲା । ୧୯୪୭ରେ ପାରିଜାତ ପ୍ରେସ୍ । ତା'ପରେ ୧୯୫୧ରେ ସଂସାର ପତ୍ରିକାର ଜନ୍ମ । ୧୯୭୦ ଅଗଷ୍ଟରେ 'ସଂସାର' ବନ୍ଦ । ପୁନଃପ୍ରକାଶନ ହେଲା ୧୯୮୨ ଅଗଷ୍ଟ ମାସରେ ।

ଦିଶିଯାଏ-- ଏବେ ବି ଜଳଜଳ ହୋଇ ସେ ମହାନ୍ ବ୍ୟକ୍ତିତ୍ୱଙ୍କର ସାଧନାର ଶେଷ ପାହାଚ ପର୍ଯ୍ୟନ୍ତ ତାଙ୍କର ଅବିଶ୍ରାନ୍ତ ଯାତ୍ରାର ପଦଚିହ୍ନ । ଯେଉଁଠି ଅଟକିଲା, ସେଇଠି ସେ ପଦଚିହ୍ନ ଆହୁରି ସ୍ପଷ୍ଟରୁ ସ୍ପଷ୍ଟତର ହୋଇ-ଉଠିଛି ଆଗାମୀ ପିଢ଼ି ପାଇଁ ।

ସେ ଜନ୍ମର ମହାର୍ଘ ମୁହୂର୍ତ୍ତଟି କେତେ ଯାଏଁ ନିଷ୍କଳଙ୍କ ଭାବରେ ପ୍ରସାରିତ ହୋଇଗଲା ସତରେ !

ଯେଉଁ ମହାପୁରୁଷ ଏହିଭଳି ସାଧନା କରନ୍ତି, ସେମାନଙ୍କର ସାଧନା କେବେ ବ୍ୟର୍ଥ ଯାଏ ନାହିଁ । ଯେଉଁ ଶିଶୁମାନଙ୍କ ପାଇଁ ସେ ସାରା ଜୀବନ ଉତ୍ସର୍ଗ କଲେ, ସେହି ଶିଶୁମାନଙ୍କ ମୁହଁରେ ହସ ଦେଖିବାର ସୁଯୋଗ ମିଳିଥିଲା ୧୯୯୪ ଅକ୍ଟୋବର ୨୮ ତାରଖ ପର୍ଯ୍ୟନ୍ତ ।

ହାୟ ! ଆଉ କିଛି ବର୍ଷ ରହିଥିଲେ ଆଉ କ'ଣ କରିଥା'ନ୍ତେ ହୁଏତ ! ସେତକ କହିବାର ବି ସୁଯୋଗ ମିଳିଲା ନାହିଁ ଯେ- କ'ଣ ସେ ଆମ ଶିଶୁ ସାହିତ୍ୟ ସମାଜଠାରୁ ଆଶା କରିଥିଲେ ! ଅଜସ୍ର ସମ୍ବର୍ଦ୍ଧନା, ପୁରସ୍କାର, ସମ୍ମାନ-- ଏସବୁ କିଛି କ'ଣ ତାଙ୍କର ଆଶାକୁ ଫଳବତୀ କରିପାରିଲା ? ସେସବୁ ତାଙ୍କୁ ଖୁବ୍ ଆନନ୍ଦ ଦେଇଥିବ । ହେଲେ ଶିଶୁଙ୍କ ପାଇଁ ତାଙ୍କର ଯେଉଁ ଆନନ୍ଦର ଗନ୍ତାଘର ସେ ହୃଦୟରେ ସାଇତି ରଖିଥିଲେ, ତାହା ତାଙ୍କୁ ସ୍ୱର୍ଗରେ ବି କାର୍ଯ୍ୟକ୍ଷମ ରଖିବ- ଏହି ଆଶା ଓ ବିଶ୍ୱାସ ।

ଏ ମହାନ୍ ବ୍ୟକ୍ତିତ୍ୱ ହେଉଛନ୍ତି ଆମ 'ସଂସାର' ପତ୍ରିକାର ପ୍ରାଣ-ପ୍ରତିଷ୍ଠାତା, ରାଜ୍ୟର ବିଶିଷ୍ଟ ଶିଶୁ

ସାହିତ୍ୟିକ ରାମକୃଷ୍ଣ ନନ୍ଦ । ତାଙ୍କର ଶ୍ରାଦ୍ଧୋତ୍ସବ- ଅକ୍ଟୋବର ୨୮ ପାଇଁ ସଂସାର-ପରିବାର ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ଆଶୀର୍ବାଦ କାମନା କରୁଛି । ଏଥି ସହିତ ଆମର ଶୁଭେଚ୍ଛୁ ପାଠକ, ସଂସାରପ୍ରେମୀ ଗ୍ରାହକ ଓ ଏଜେଣ୍ଟମାନଙ୍କୁ ଶାରଦୀୟ ଅଭିନନ୍ଦନ ।

--ଅନସୂୟା ନନ୍ଦ

## ପୃଥିବୀର ସବୁଠାରୁ ଦୀର୍ଘତମ ସ୍ମୃତିସ୍ତମ୍ଭ

ପ୍ରସ୍ତାବିତ ୩୩ ମହାଲା ବିଶିଷ୍ଟ ଏହି ସ୍ତମ୍ଭଟିର ମଡେଲ୍‌ଟି ଟ୍ରାନ୍ସ୍‌ପରେଣ୍ଟ୍ ହାଉସ୍ ଟିମ୍ ଦ୍ୱାରା ତିଆରି କରାହୋଇଛି । ଏଥିରେ ରହିଛି ଶିଶୁ ପାଠାଗାର, ସଭାଗୃହ, ବିଜ୍ଞାନ ଘର, ମନୋରଞ୍ଜନ ଗୃହ ଓ ବିଶ୍ରାମ ଗୃହ ଇତ୍ୟାଦି ରହିଛି । ଜାବିଲ୍ ପାର୍କ ଠାରେ ୨୨୦ ହେକ୍ଟର ସ୍ଥାନରେ ଏହା ଦୁବାଇର ମୁଖଶାଳା ଭାବେ ଅନେକ ପରିଦର୍ଶକଙ୍କୁ ଆକୃଷ୍ଟ କରିବ । ଏହା ବ୍ୟତୀତ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଶିତ ହେବାର ଏଥିରେ ସୁବିଧା ରହିଛି । ୨୦୧୫ ମସିହା ସୁଦ୍ଧା ଏହାର କାର୍ଯ୍ୟ ସଂପୂର୍ଣ୍ଣ ହେବାର ଅଟକଳ କରାଯାଇଛି ।

## କ୍ଷମା ପ୍ରାର୍ଥନାର ଅର୍ଥ

କ୍ଷମା ପ୍ରାର୍ଥନା କରିବା ଅର୍ଥ ନୁହେଁ ଯେ ଆମେ ଭୁଲ୍ କରିଛୁ ଓ ଅନ୍ୟ ଲୋକଟି ଠିକ୍ କରୁଛି ।

ଏହାର ଅର୍ଥ, ଆମେ ଆମର ନିଜର ଅଭିମାନ ଅପେକ୍ଷା ଅନ୍ୟ ଲୋକ ସହିତ ସମ୍ପର୍କକୁ ଅଧିକ ମୂଲ୍ୟ ଦେବାପାଇଁ ମଧ୍ୟ କ୍ଷମା ମାଗୁଛୁ ।

# ବୁଡ଼ିଯାଉଥିବା ମଣିଷ

ଶାନ୍ତି ସାମଲ

ଥରେ ଜଣେ ପୂଜକ ଅନ୍ୟ ଯାତ୍ରୀମାନଙ୍କ ସହିତ ଡଙ୍ଗାରେ ନଈ ପାରି ହେଉଥିଲେ । ନଦୀରେ ଡଙ୍ଗାଟି ଯାଉଥିବା ସମୟରେ ଖୁବ୍ ଜୋର୍‌ରେ ଝଡ଼ବର୍ଷା ହେଲା । ନାଉରିଆ ତା'ର ଶକ୍ତି ଅନୁସାରେ ଡଙ୍ଗାଟି ଧୀରେ ଧୀରେ ନେବାପାଇଁ ଚେଷ୍ଟା କରୁଥାଏ । ଯେତେ ଚେଷ୍ଟା କଲେ ବି ଡଙ୍ଗାଟି ବୁଡ଼ିବାକୁ ଆରମ୍ଭ କଲା । ନାଉରିଆ ସବୁ ଯାତ୍ରୀଙ୍କୁ ଡଙ୍ଗାରୁ ଡେଇଁପଡ଼ି କୂଳ ପର୍ଯ୍ୟନ୍ତ ପହଁରି ଯିବାପାଇଁ କହିଲା । ଯାତ୍ରୀମାନେ ପହଁରିବାକୁ ଆରମ୍ଭ କଲେ । ପୂଜକଜଣକ ଡଙ୍ଗାରେ ବସି କେବଳ ପ୍ରାର୍ଥନା ବୋଲୁଥାଆନ୍ତି ଓ ବିଭିନ୍ନ ଦେବଦେବୀଙ୍କୁ ଡାକି ମାନସିକ କରୁଥାଆନ୍ତି ।

ନାଉରିଆ ବାଧ୍ୟ ହୋଇ ତାଙ୍କୁ ପାଣି ଭିତରେ ଓହ୍ଲାଇଦେଇ ଗୋଡ଼ହାତ ହଲାଇ ପହଁରିବାକୁ ଉପଦେଶ ଦେଲା । ବିପଦରେ ଆମେ ଇଶ୍ୱରଙ୍କୁ ଡାକିବା ନିଶ୍ଚୟ; କିନ୍ତୁ ପ୍ରଥମେ ନିଜେ ବିପଦରୁ ଉଦ୍ଧାର ପାଇବା ପାଇଁ ଚେଷ୍ଟା କରିବା ଦରକାର । ନିଜେ ଚେଷ୍ଟା କଲାପରେ ଇଶ୍ୱର ଆମକୁ ସାହାଯ୍ୟ ନିଶ୍ଚୟ କରିବେ । ଇଶ୍ୱରଙ୍କୁ କେବଳ ପ୍ରାର୍ଥନା କଲେ ସୁଫଳ କେବେ ବି ପାଇବେନି । ଇଶ୍ୱର ସେଇମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସନ୍ତି, ଯେଉଁମାନେ ନିଜ କର୍ମଦ୍ୱାରା ନିଜକୁ ସାହାଯ୍ୟ କରିଥାଆନ୍ତି ।

*୧ଏନ ୪, ୱାର୍ଡ - ୨୬, ଅରୁଣୋଦୟ ନଗର, କଟକ-୧୨*



ଲୋକରଙ୍ଗ

## କଳାସାଧକ
## ମୋହନ ସୁନ୍ଦର ଦେବଗୋସ୍ୱାମୀ

ଦେବଦତ୍ତ ସାମନ୍ତସିଂହାର

ଲୋକନାଟକର ଅନେକ ରଙ୍ଗତରଙ୍ଗ ମଧ୍ୟରୁ 'ରାସ' ଏକ ଅନନ୍ୟ ସାଧାରଣ ନାଟ୍ୟକଳ୍ପ। 'ରସ' ମଧ୍ୟରୁ ଏହାର ଉତ୍ପତ୍ତି ଓ ବିକାଶ। 'ରସସମୂହ'ରୁ ରାସର ସୃଷ୍ଟି। ଶଙ୍କରାଚାର୍ଯ୍ୟ କହିଛନ୍ତି "ଆନନ୍ଦ କାରଣଂ ରସବତ୍ ବ୍ରହ୍ମ, ବ୍ରହ୍ମୈବ ରସଃ" ବା ଭଗବାନ ରସସ୍ୱରୂପ ଅଟନ୍ତି। ରାସ ହେଉଛି ସେହି ଲୀଳା, ଯେଉଁଥିରେ ରସର ପରମ ସାର୍ଥକତା ପ୍ରତିପାଦିତ ହୋଇଥାଏ। ସାଧାରଣତଃ ଶ୍ରୀକୃଷ୍ଣଚନ୍ଦ୍ରଙ୍କ କାମିନୀ ବିଳାସ ରୂପକ ଏହା ଶୃଙ୍ଗାରିକ ଲୀଳା ହୋଇଥିଲେ ମଧ୍ୟ ଆଲୋକ ସହିତ ଅନ୍ଧକାର, ଅମୃତ ସହିତ ମୃତ୍ୟୁର, ନିତ୍ୟ ସହିତ ଅନିତ୍ୟର ତଥା ପ୍ରକୃତି ସହିତ ପୁରୁଷର ମିଳନତତ୍ତ୍ୱବୋଧକୁ 'ରାସ' କୁହାଯାଏ। ପରମ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ପ୍ରେମରେ ସମ୍ମୋହିତ ଭବବନ୍ଧନ ଓ ମାୟାର ଆକର୍ଷଣ ମଧ୍ୟରୁ ବିନିର୍ମୁକ୍ତ ହୋଇପାରିଲେ ଯମୁନା ପୁଳିନରେ ଯାଇ ପରମ ସହିତ ଜୀବାର୍ଥବାଚକ ଗୋପବାସୀଙ୍କ ସହିତ ମିଳନପର୍ବ ପରିପୂର୍ଣ୍ଣତା ଲାଭ କରେ।

ଭାରତର ରାସ ପରମ୍ପରା ବହୁ ପ୍ରାଚୀନ। ଓଡ଼ିଆ ଭାଷାରେ ଅତିବଡ଼ୀ ଜଗନ୍ନାଥ ଦାସ ରାସଲୀଳାର ପ୍ରଥମ ଉନ୍ମେଷକ। ବସନ୍ତ ରାସ, ଶରତ ରାସ, ମହାରାସ, କୃଷ୍ଣରାସ, ନିତ୍ୟରାସ, ଗୋପରାସ ଆଦି ଷଡ଼ରାସର ବର୍ଣ୍ଣନା ଭାଗବତ ପଦାବଳୀରେ ପ୍ରାଣବନ୍ତ ହୋଇଛି। ରାସତତ୍ତ୍ୱର ସରଳ ବ୍ୟାଖ୍ୟା କରି ଭାଗବତକାର କହିଛନ୍ତି, "ଷୋଳସହସ୍ର ଗୋପନାରୀ , ମୋତେ ବରିଲେ ତପ କରି, ମୁଁ ତାଙ୍କ ପୂରାଇବି ଆଶ, ସେ ମୋର ଭକତ ବିଶ୍ୱାସ"। ଭକ୍ତର ଉଦ୍ଧାର ପାଇଁ ସ୍ୱୟଂ ପରଂବ୍ରହ୍ମ ଶ୍ରୀକୃଷ୍ଣ ରସରାଜର ରୂପ ନେଇ ରାସଲୀଳା ସଙ୍ଗଠିତ କରିଛନ୍ତି।

ନାଟ୍ୟ ପରମ୍ପରାର ଏକ ଅନନ୍ୟ ଆଲେଖ୍ୟ ରୂପ ରାସଲୀଳା ସମ୍ପାଦିତ ହୋଇଆସିଛି। ଏହାର ସୃଷ୍ଟିରେ ରହିଛି ନୂତନତ୍ୱ। ଚିନ୍ତା, ଭଙ୍ଗୀ ଓ ସାଙ୍ଗୀତିକତାର ନୂତନ ଆଶ୍ଳେଷରେ ରାସ ପରମ୍ପରା ଏକ ଗଣନାଟ୍ୟ ଭାବରେ ପ୍ରତିଷ୍ଠା ଅର୍ଜନ କରିପାରିଛି। ଏହି ପରମ୍ପରାର ଅନ୍ୟତମ ସୂତ୍ରଧର ହେଉଛନ୍ତି ଉତ୍କଳର ଅନ୍ୟତମ କଳାସାଧକ ପ୍ରଭୁପାଦ ମୋହନ ସୁନ୍ଦର ଦେବଗୋସ୍ୱାମୀ। ଏକାଧାରରେ ସେ ଜଣେ ଆଶୁକବି, ବୈଷ୍ଣବ, ନାଟ୍ୟକାର, ସଙ୍ଗୀତକାର, ଗାୟକ ଓ ପ୍ରଥମ ଓଡ଼ିଆ ସବାକ୍ ଚଳଚ୍ଚିତ୍ରର ପ୍ରଯୋଜକ ଭାବରେ ପ୍ରତ୍ୟେକ ଓଡ଼ିଆର ପ୍ରାତଃସ୍ମରଣୀୟ। ଅପୂର୍ବ ସ୍ୱତଃସ୍ଫୂର୍ତ୍ତ କାବ୍ୟିକଶୈଳୀ, କଳ୍ପନା ଛନ୍ଦ ତଥା ଜନମାନସର ମନଛୁଆଁ ଭାବବିଳାସର ସେ ଥିଲେ ମୂର୍ତ୍ତିମନ୍ତ ବିଗ୍ରହ।

ପ୍ରଭୁପାଦ ମୋହନ ସୁନ୍ଦର ଦେବଗୋସ୍ୱାମୀ ୧୯୮୨ ମସିହା ଅଗଷ୍ଟ ୮ ତାରିଖ ଦିନ ନଦୀୟା ନିବାସୀ ଶ୍ରୀ ନିତ୍ୟାନନ୍ଦ ମହାପ୍ରଭୁଙ୍କ ବଂଶଜ ପୁରୀ ମରିଚିକୋଟ ନିବାସୀ ଶ୍ରୀ ହରିଦେବ ଗୋସ୍ୱାମୀଙ୍କ ପରିବାରରେ ଜନ୍ମଗ୍ରହଣ କରି ଦୀର୍ଘ ୫୭ ବର୍ଷ ଧରି ଏକ କଳାମୟ ସାଧନାସ୍ନିଗ୍ଧ ଜୀବନ ଅତିବାହିତ କରି ଯାଇଛନ୍ତି। ବୈଷ୍ଣବ ପରମ୍ପରାର ଜଣେ ପ୍ରବକ୍ତା ଭାବେ ତାଙ୍କର ପରିବାର ଉତ୍କଳୀୟ ଗଣଜୀବନକୁ ଏକ ଆଧ୍ୟାତ୍ମିକ ମାର୍ଗଦର୍ଶନ ଦେଇ ଆସିଛି। ଉତ୍କଳର ଗ୍ରାମେ ଗ୍ରାମେ ଗଠିତ ପ୍ରାଚୀନ ଭାଗବତ ଟୁଙ୍ଗି ସଂଲଗ୍ନ ସଂକୀର୍ତ୍ତନ ରାସମଣ୍ଡଳୀ ପ୍ରତିଷ୍ଠା କରାଇବା ଏ ପରିବାରର ଅନ୍ୟତମ କୌଳିକ ବୃତ୍ତି ଥିଲା। ନବଗଠିତ ରାସମଣ୍ଡଳୀମାନେ ଗୋସ୍ୱାମୀ ପରିବାରର ଇଷ୍ଟଦେବ ଶ୍ରୀ ଶ୍ରୀ କୁଞ୍ଜବିହାରୀଙ୍କ ସମ୍ମୁଖରୁ ଭେରି, ତୂରୀ, ଖନତା, କତି, ଫୁଲ, ଟୋପି,

ଝରା ବାଙ୍କି ଓ ବିଜେପତାକା ଗ୍ରହଣ କରିବା ପରେ ଆନୁଷ୍ଠାନିକ ଭାବେ ସଂକୀର୍ତ୍ତନ ଆରମ୍ଭ କରୁଥିଲେ ।

ଶ୍ରୀକୃଷ୍ଣ ପ୍ରେମ ତତ୍ତ୍ୱର ଜଣେ ତତ୍ତ୍ୱାଗ୍ରହୀ ପ୍ରଚାରକ ତଥା ପ୍ରସାରକ ଭାବେ ତାଙ୍କର ସାରସ୍ୱତ ଜୀବନ ଉତ୍କଳୀୟ ରୀତିଯୁଗୀୟ ପରମ୍ପରା ଦ୍ୱାରା ବହୁଧା ପ୍ରଭାବିତ ହୋଇଥିବାର ଲକ୍ଷ୍ୟ କରାଯାଏ । ରାଗାନୁଗା ଭକ୍ତିରସକୁ ରୁଚିପୂର୍ଣ୍ଣ କଳାତ୍ମକ ପରିପ୍ରକାଶ କରାଇବା ପାଇଁ ସେ ବହୁ ପ୍ରାଚୀନ ଗୀତିକବିଙ୍କ ମାର୍ଗ ଅନୁସରଣ କରି ତାଙ୍କ ରଚନାର ପ୍ରତି ଛତ୍ରେ ସ୍ୱୀକାର କରିଛନ୍ତି--

ସର୍ବ ଧର୍ମ ହେବ ମୁକୁଟ ଆମ ବଡ଼ଦେଉଳ ।
ଖର୍ବ କରେ ଚିତ୍ତ ବିଭ୍ରମ ପ୍ରେମ ତୁଳସୀଜଳ ॥
ଗୋପାଳକୃଷ୍ଣ ଦୀନକୃଷ୍ଣ ଶ୍ରୀ ସାମନ୍ତସିଂହାର ।
ଦେବଦୁର୍ଲଭ ଉପଇନ୍ଦ୍ର ଘୁମୁସର ଈଶ୍ୱର ॥
ସଦାନନ୍ଦ ବ୍ରହ୍ମ ଶ୍ରୀ ବନମାଳୀ ହରିଚନ୍ଦନ ।
ବଳଦେବ କବି ବୈଷ୍ଣବ ଭକ୍ତ ଚରଣ ॥
କୃଷ୍ଣ କୃପାସିନ୍ଧୁ ଉଚ୍ଛୁଳା ପ୍ରେମାମୃତ କବିତା ।
ପବିତ୍ର ଭାରତ ଗଗନେ ମହୋଜ୍ଜ୍ୱଳେ ସବିତା ॥

ମାନଭଞ୍ଜନ, ଆନନ୍ଦ ବୃନ୍ଦାବନ, ଚମ୍ପୂ, ଶରତରାସ, ଶ୍ରୀରାଧାପ୍ରେମାମୃତ, ଅଭିସାର ଆଦି ନାଟ୍ୟକୃତି ସହିତ ବିଦଗ୍ଧ ମାଧବ, ବିଦଗ୍ଧଚିନ୍ତାମଣି, ମଥୁରାମଙ୍ଗଳ ଆଦି ପ୍ରସିଦ୍ଧ ଗ୍ରନ୍ଥର ନାଟ୍ୟରୂପ ଓ ମୋ କାଳିଆ ହାତୀ, ଶ୍ରୀଗୁରୁ କବିତା ଗୁଚ୍ଛ ଆଦି ଅନେକ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ ସେ ରଚନା କରି ଯାଇଛନ୍ତି । ବୌଦ ନରପତି ନାରାୟଣ ପ୍ରସାଦ ଦେବଙ୍କ ପୃଷ୍ଠପୋଷକତାରେ ୧୯୨୯ ମସିହାରୁ ପ୍ରେମ ଭକ୍ତିମୂଳକ ଏକ କ୍ଷୁଦ୍ର ପତ୍ରିକା 'ଅଧରାମୃତ' ତାଙ୍କ ସମ୍ପାଦନାରେ କେତେ ବର୍ଷ ଧରି ପ୍ରକାଶ ପାଇଥିଲା । ରାସ ଅଭିନୟର ପ୍ରତ୍ୟେକ ସନ୍ଧ୍ୟାରେ ମଞ୍ଚ ଉପରେ ଗୋସ୍ୱାମୀ ସ୍ୱାଗତ ସମ୍ଭାଷଣ ଜଣାଇଲାବେଳେ ନିର୍ଭୀକ ଭାବେ ବିଦ୍ରୂପାତ୍ମକ ରୀତିରେ ଆଶୁ କବିତା ଦ୍ୱାରା ନିଜର ବକ୍ତବ୍ୟ ପ୍ରଦାନ କରୁଥିଲେ ।

ଗୋସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ଶ୍ରୀରାଧା କୁଞ୍ଜବିହାରୀ ରାସପାର୍ଟି' ୧୯୨୮ ମସିହାରୁ ପୁରୀରେ ଆରମ୍ଭ ହୋଇ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏବଂ ସୁଦୂର କଲିକତା, ନବଦ୍ୱୀପ, ମାନ୍ଦ୍ରାଜ ଓ ବମ୍ବେଠାରେ ଅପୂର୍ବ ସଫଳତାର ସହ ଅଭିନୟ ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇଥିଲା । ଏହି କଳାପୀଠର କୃତୀ ସନ୍ତାନ ଭାବେ ସ୍ୱର୍ଗତ ଅଦ୍ୱୈତ ଚରଣ ମହାନ୍ତି, ସ୍ୱର୍ଗତ ଗୌରହରି ଦାସ, ସ୍ୱର୍ଗତ ଗୌରସୁନ୍ଦର ଦେବଗୋସ୍ୱାମୀ, ନୃତ୍ୟଗୁରୁ ପଦ୍ମଭୂଷଣ କେଳୁଚରଣ ମହାପାତ୍ର, ସ୍ୱର୍ଗତ ଦେବପ୍ରସାଦ ଦାସ, ଶିଳ୍ପୀ କୁଞ୍ଜ ମହାରଣା, ବାଦ୍ୟଶିଳ୍ପୀ ବନମାଳୀ ମହାରଣା, ହାତୀ ମହାରଣା, ନରସିଂହ ନନ୍ଦଶର୍ମା ଓ ସାମ୍ବାଦିକ ପ୍ୟାରିମୋହନ ଦାସ କଳା ସାଧନାକୁ ଅବ୍ୟାହତ ରଖି ପରବର୍ତ୍ତୀ କାଳରେ କଳା କ୍ଷେତ୍ରରେ ବେଶ୍ ପ୍ରତିଷ୍ଠା ଅର୍ଜନ କରି ପାରିଛନ୍ତି । ଯଥାର୍ଥରେ ଉତ୍କଳର ଅନ୍ୟତମ କଳାକ୍ଷେତ୍ର ରୂପେ ଗୋସ୍ୱାମୀଙ୍କ ରାସପାର୍ଟି ଏକ ଏନ୍ତୁଡ଼ିଶାଳ ରୂପେ କାର୍ଯ୍ୟ ସମ୍ପାଦନା କରିଛି । ୧୯୪୮ ମସିହା ଜାନୁଆରୀ ୧ ତାରିଖରେ ଗୋସ୍ୱାମୀଙ୍କ ମୃତ୍ୟୁପରେ ତାଙ୍କର ଏକମାତ୍ର ପୁତ୍ର ବିଶିଷ୍ଟ





(କଳାବିକାଶ କେନ୍ଦ୍ର ପରିବେଷିତ 'କୃଷ୍ଣଗାଥା')

ମଞ୍ଚ ତଥା ବେତାର କଣ୍ଠଶିଳ୍ପୀ ଗୌରସୁନ୍ଦରଙ୍କ ନେତୃତ୍ୱରେ ୧୯୫୩ ମସିହାଠାରୁ ମୋହନ ନାଟ୍ୟ ପ୍ରତିଷ୍ଠାନ ଓ ପରେ ୧୯୫୬ ମସିହାଠାରୁ ଉତ୍କଳ ଥିଏଟର୍ସ ମାଧ୍ୟମରେ ଏହି ରାସ ପରମ୍ପରା ୧୯୬୧ମସିହା ପର୍ଯ୍ୟନ୍ତ ରକ୍ଷା କରାଯାଇ ପାରିଥିଲା।

କଲିକତାରେ ଏକ ଘରୋଇ ଚଳଚ୍ଚିତ୍ର ସଂସ୍ଥା 'କାଳୀ ଫିଲିମସ୍' ସହାୟତାରେ ଅନୁନ୍ୟ ୩୦ ହଜାର ଟଙ୍କା ବ୍ୟୟରେ ମୋହନ ଗୋସ୍ୱାମୀ ୧୯୩୪ ମସିହାରେ ପ୍ରଥମ ଓଡ଼ିଆ ସବାକ୍ ଚଳଚ୍ଚିତ୍ର 'ସୀତା ବିବାହ'



(ପ୍ରଥମ ସବାକ୍ ଓଡ଼ିଆ ଚଳଚ୍ଚିତ୍ର 'ସୀତା ବିବାହ'ର ଏକ ଦୃଶ୍ୟ)

ପ୍ରଯୋଜନା କରି ନିଜର ନିଷ୍ଠା, ସାହସ, କଳାତ୍ମକ ରୁଚିବୋଧର ଯଥାର୍ଥ ପରିଚୟ ଦେଇ ପାରିଛନ୍ତି। ଓଡ଼ିଆ ଚଳଚ୍ଚିତ୍ରର ଆଦ୍ୟ ପ୍ରବର୍ତ୍ତକ ରୂପେ ସେ ଆଜି ସ୍ମରଣୀୟ ଓ ବରଣୀୟ। ଜଣେ ସୁଯୋଗ୍ୟ କଣ୍ଠଶିଳ୍ପୀ ଭାବେ ସେ H.M.V କମ୍ପାନୀ ଦ୍ୱାରା 'ଆହା ମୋ ନନ୍ଦ କୋଳେ ଗୋବିନ୍ଦ, ବାଜେ ଶଙ୍ଖ ଭେରୀ ତୂରୀ ଭୁବନ ଆନନ୍ଦ' ଓ 'ଆସ ଭାଇ ଲୁଚି କୋଳି ତୋଳିବା' ସଙ୍ଗୀତଦ୍ୱୟକୁ ପ୍ରଥମ କରି ଗ୍ରାମୋଫୋନ୍ ରେକର୍ଡ ଦ୍ୱାରା ପରିବେଷଣ କରିଥିଲେ। ଓଡ଼ିଆ ସଙ୍ଗୀତ ଜଗତରେ ତାହା ଆଜି ଇତିହାସର ସ୍ମୃତି ଓ ସମ୍ପଦ।

କର୍ମକ୍ଳାନ୍ତ ଜୀବନର ଶେଷଯାମରେ ଦାରୁଣ ରୋଗ ଓ ଅର୍ଥାଭାବ ଭିତରେ ପଡ଼ି ସେ ଲେଖିଥିଲେ--

ଭଙ୍ଗା ପଡ଼ି ମୋର ଜୀବନନଦୀ ଗଲାଣି ଶୁଖି  
ତୋଟା ମଶାଣିରୁ ମରଣଦୂତ ମାରୁଛି ଉଙ୍କି  
ପଞ୍ଜରା ହେଲାଣି ଝଞ୍ଜରା ମଞ୍ଜ ଗଲାଣି ଶୁଖି  
ଖଞ୍ଜରେ ବ୍ୟାଧି ଓଟାରୁଛି ମଞ୍ଜି ସମୟ ଦେଖି।"

ବଙ୍ଗୀୟ ପରିବାର ମଧ୍ୟରେ ଜନ୍ମ ହୋଇଥିଲେ ମଧ୍ୟ ଉତ୍କଳ ମାଟିରେ ଭୂମିଷ୍ଠ ହୋଇ ସେ ତାଙ୍କର ଅନ୍ତିମ ସମୟରେ କାବ୍ୟିକ ଆତ୍ମାରେ ଉତ୍କଳ ଜନନୀର ଜୟଗାନ କରି ଲେଖିଛନ୍ତି--

ଜୟ ମା ଉତ୍କଳ ଜନନୀ ମୋର ଜନମ ଭୂମି  
ବିଦାୟ ନେଉଛି ତୋ କୋଳୁ ଏ ମୋହନ ଗୋସ୍ୱାମୀ  
ଫୁଲଣାମନେ ମା'କରୁଣା ମୋର ଏତିକି ହେଉ  
ପୁରୁଣା ସଙ୍ଗୀତ ଗାଇ ମୋହନ ଜୀବ ଯାଉ।"

ଜାତୀୟ ସ୍ୱାଭିମାନ ଶିଳ୍ପୀ ମୋହନ ସୁନ୍ଦର, ଉତ୍କଳ ନାଟ୍ୟ ଆନ୍ଦୋଳନ, ଚଳଚ୍ଚିତ୍ର ପ୍ରଯୋଜନା, ସ୍ୱର ସାଧନା ତଥା ରାସସ୍ରଷ୍ଟା ଭାବେ ନିଜର ନିଷ୍ଠା, ସାଧନା ଓ ପ୍ରବଣତା ଦ୍ୱାରା ଏ ଜାତିର କଳା ଇତିହାସକୁ ଯୁଗ ଯୁଗ ଧରି ଅମର କରିଛନ୍ତି।

(କଳାବିକାଶ କେନ୍ଦ୍ର ସ୍ମରଣିକାରୁ ଉଦ୍ଧୃତ)



# ପୁସ୍ତକ ପରିଚୟ

**ପ୍ରବିନ ଓ ଗଛ କଥା**-- ଲେଖକ- **ଶ୍ରୀ ପୁରୁଷୋତ୍ତମ ଧଳ,** ପଦିନାରାୟଣ ପୁର, ପୋ- ଭଗିବିନ୍ଧା, ବାରିକପୁର ବଜାର, ଭଦ୍ରକ-୭୫୬୧୧୨। ମୂଲ୍ୟ- ୩୦ ଟଙ୍କା ମାତ୍ର।

ସକଳ ଘଟେ ନାରାୟଣ, ଧର୍ମବଳ, ରାଜାଙ୍କ ପରୀକ୍ଷା, ଦୋଷୀ ଦଣ୍ଡ ପାଏ, ପରୋପକାର ଇତ୍ୟାଦି ୨୦ଟି ଗଳ୍ପର ସମାହାର ହୋଇଛି ଏହି ଡିମେଇ ଆକାର ପୁସ୍ତକଟିରେ। ଛୋଟ ଛୋଟ ଗଳ୍ପଗୁଡ଼ିକୁ ପିଲାମାନେ ପଢ଼ିବାକୁ ଭଲପାଇବେ। ସବୁଗୁଡ଼ିକ ଶିକ୍ଷଣୀୟ ଓ ଚିତ୍ର ମଧ୍ୟ ରହିଛି। ଗତାନୁଗତିକ ଘଟଣାର ଅବତାରଣା କରାଯାଇ ଗଳ୍ପଗୁଡ଼ିକ ସରଳ କରିବାର ଯଥାସାଧ୍ୟ ଚେଷ୍ଟା କରାଯାଇଛି। ରଙ୍ଗିନ୍ ପ୍ରଚ୍ଛଦରେ ପିଲାଟିଏ ଗଛ ଚଢ଼ିବାର ଦୃଶ୍ୟ ରହିଛି। ପୁସ୍ତକଟି ଆଦୃତ ହେବାର ଆଶା ରଖୁଛୁ।

**ସୃଜନ ସଂଳାପ**-- ଲେଖକ- **ଡକ୍ଟର କୃତ୍ତିବାସ ନାୟକ,** ଆକାଶବାଣୀ, ଜୟପୁର । ମୂଲ୍ୟ- ୧୦୦ ଟଙ୍କା ମାତ୍ର।

ଲେଖକ ତାଙ୍କର ସାହିତ୍ୟିକ ଜୀବନ ତଥା ସାହିତ୍ୟର ବାଟରେ ଯେଉଁମାନଙ୍କୁ ଭେଟିଛନ୍ତି ଏବଂ ନିଜ ଜୀବନରୁ କିଛି କିଛି ମିଶାଇ ଏହି ଡିମେଇ ଆକାର ପୁସ୍ତକଟିକୁ ସୃଷ୍ଟି କରିଛନ୍ତି।

ଏଥିରେ ତାଙ୍କର ଅଭିଜ୍ଞତା, ଉପଦେଶ ତଥା ସାହିତ୍ୟ ବିଷୟରେ କିଛି କଥା ରହିଛି । ରଙ୍ଗିନ୍ ପ୍ରଚ୍ଛଦରେ ଲେଖକଙ୍କର ଫଟୋ ସହିତ ପେନ୍‌ଟିଏ ରଖାଯାଇଛି, ଯାହା ରୁଚିକର ହୋଇଛି। ଏହା ସବୁଶ୍ରେଣୀର ପାଠକଙ୍କୁ ପ୍ରେରଣା ଯୋଗାଇବ --ଆଶା ଓ ବିଶ୍ୱାସ।

**ନବ ଆକାଶର ଚନ୍ଦ୍ରମା**-- ସମ୍ପାଦକ- **ଶ୍ରୀ ବୁଦ୍ଧଦେବ ସେଠୀ,** ଚନ୍ଦ୍ରମା କାର୍ଯ୍ୟାଳୟ, ବି- ୪୯, ଦୀପଶିଖା, ଅନୁଗୋଳ-୭୫୯୧୪୭। ପ୍ରତି ଖଣ୍ଡ- ୨୦ ଟଙ୍କା ।

ଏପ୍ରିଲ୍-ଜୁନ୍/ଜୁଲାଇ-ସେପ୍ଟେମ୍ବର- ୨୦୧୩ର କ୍ରାଉନ୍ ଆକାରର ପତ୍ରିକାଟି ଆମର ହସ୍ତଗତ ହୋଇଛି। ଏହି ପତ୍ରିକାରେ କବିତା, ଗଳ୍ପ, ଶିଶୁ-ନାଟକ, ଭ୍ରମଣ କାହାଣୀ, ଜଣା-ଅଜଣା, ବିଜ୍ଞାନ କଥା ତଥା ଧନ୍ଦା ଓ ଶିଶୁ ସାହିତ୍ୟିକଙ୍କର ଜୀବନୀ ଇତ୍ୟାଦି ରହିଛି। ଶିଶୁ-ପାଠକଙ୍କୁ ଆକର୍ଷିତ କରିବା ପାଇଁ ଚିତ୍ର ମଧ୍ୟ ସ୍ଥାନ ପାଇଛି। ରଙ୍ଗିନ୍ ପ୍ରଚ୍ଛଦ ସହିତ ପତ୍ରିକାଟି ସରସସୁନ୍ଦର ହୋଇ ପାରିଛି। ଏହା ଆଦୃତ ହେଲେ ସମ୍ପାଦନା ମଣ୍ଡଳୀଙ୍କ ଶ୍ରମ ସାର୍ଥକ ହେବ।

**ଫେରିବାଲା**-- ସମ୍ପାଦକ- **ଶ୍ରୀ ରଂଜନ କୁମାର ସାହୁ,** ମାର୍ଫତ୍- ବିପିନି ସାହୁ, ରଙ୍ଗବେଡ଼ା,ବିଜିଗୋଳ, ଅନୁଗୋଳ-୭୫୯୦୧୭। ମୂଲ୍ୟ- ୨୦ ଟଙ୍କା ମାତ୍ର ।

ଏହି କ୍ରାଉନ୍ ଆକାରର ଜ୍ଞାନବିଜ୍ଞାନମୂଳକ ଜୁଲାଇ-ସେପ୍ଟେମ୍ବରର ତ୍ରୈମାସିକ ଶିଶୁ-କିଶୋର ପତ୍ରିକାଟିରେ ଗଳ୍ପ, କବିତା, ବଡ଼ମଣିଷଙ୍କ ଜୀବନୀ, ବିଜ୍ଞାନ କଥା, ଆଶ୍ଚର୍ଯ୍ୟ କଥା, ଔଷଧୀୟ ଗୁଣ, ସାଧାରଣ ଜ୍ଞାନ ଇତ୍ୟାଦି ରହିଛି। ସମସ୍ତ ବିଷୟରେ ଚିତ୍ର ଥିବାରୁ ପିଲାଙ୍କୁ ଆକର୍ଷିତ କରିବ। ଏଥି ସହିତ ପିଲାଙ୍କ ପ୍ରତିଭା କିପରି ବିକଶିତ ହେବ, ତାହା ଖୁବ୍ ସୁନ୍ଦର ଭାବରେ ଦର୍ଶାଇ ଦିଆଯାଇଛି, ଯାହାକି ଆଜିର ପିଲାମାନେ ଜାଣିବା କଥା। ପତ୍ରିକାଟିର ପ୍ରସାର ତଥା ପ୍ରଚାର କାମନା କରୁ।

ରାଜ୍ୟରେ କେତେକ ସ୍ଥାନରେ ଅନୁଷ୍ଠିତ ପୌର ନିର୍ବାଚନରେ ଜି.ଜେ.ଡି. ର ୪୧ଟି, କଂଗ୍ରେସର ୧୦ଟି ଏବଂ ସ୍ୱାଧୀନ ସଦସ୍ୟଙ୍କର ୨ଟି ପୌରାଞ୍ଚଳରେ ସଂଖ୍ୟା ଗରିଷ୍ଠତା ହାସଲ ।




୨୫। ୮-- ସଙ୍ଗୀତ ସୁରମଣି ପଦ୍ମଶ୍ରୀ ପଣ୍ଡିତ ରଘୁନାଥ ପାଣିଗ୍ରାହୀଙ୍କର ୭୯ ବର୍ଷରେ ପରଲୋକ। ମାତ୍ର ୧୯ ବର୍ଷ ବୟସରେ ସେ ତେଲଗୁ ସିନେମା 'ଇଲା ଭେଲପୁ' ପାଇଁ କଣ୍ଠଦାନ କରିଥିଲେ।

❀❀❀❀❀❀❀❀❀❀❀❀❀

## ଶବ୍ଦଧନ୍ଦା-ଅକ୍ଟୋବର, ୨୦୧୩

❀❀❀❀❀❀❀❀❀❀❀❀❀

ଶ୍ରୀ ବିଧୁର କୁମାର ଦାଶ

୧। କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।
୨। ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ।
୩। ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ।
୪। ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫। ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ।
୬। ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୧୦।୨୦୧୩
୭। ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | ୩ | ❀ | ୪ | | ୫ |
| ୬ | | | ୭ | | ❀ | |
| ୮ | | ❀ | ୯ | | ୧୦ | |
| ❀ | ❀ | ୧୧ | | ❀ | ୧୨ | |
| ❀ | ❀ | ୧୩ | | ୧୪ | | ❀ |
| ❀ | ୧୫ | | | | ❀ | ୧୬ |
| ୧୭ | | | | ❀ | ୧୮ | |

### ସୂଚନା

**ବାମରୁ ଡାହାଣ--** ୧। ପ୍ରଶ୍ନ (୩), ୪। ପାତ୍ର (୩), ୬। ସ୍ନେହାତିଶଯ୍ୟ (୫), ୮। ପୃଥିବୀ (୨), ୯। ଅଭିପ୍ରାୟ (୪), ୧୧। ରାଜମିସ୍ତ୍ରୀଙ୍କ ସରଞ୍ଜାମ ବିଶେଷ(୨), ୧୨। ବାଜି (୨), ୧୩। ମୁସଲମାନ ପର୍ବ(୪), ୧୫। ଅକପଟ (୪), ୧୭। ଆକସ୍ମିକ (୪), ୧୮। ଲମ୍ଫ (୨)।

**ଉପରୁ ତଳ --** ୧। ଇତ୍ୟାଦି (୩), ୨। ବଳବର୍ଦ୍ଧକ ଔଷଧ (୩), ୩। ଶବ୍ଦ (୨), ୪। ଦେଶବିଦେଶ (୩), ୫। ଚିଲିକାର ପକ୍ଷୀ ବିହାର (୪), ୭। ଏକ ସମୟର (୬), ୧୦। ଭାଷଣ (୩), ୧୧। ଲାଳସା (୪), ୧୪। ଭିଡ଼ (୨), ୧୫। କ୍ଷେତ୍ରର କ୍ଷୁଦ୍ର ଅଂଶ (୨), ୧୬। ଦୋଷଜନକ କାର୍ଯ୍ୟ (୨) ।

*--ଧଣ୍ଡାମୁଣ୍ଡା, ବଲାଙ୍ଗିର-୨୮*

---

**ସେପ୍‌ଟେମ୍ବର '୧୩ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧। ଅଙ୍ଗାରକ, ୩। ଫୁରୁସତ, ୬। ପିଲ, ୮। ଯୁଆଣି/ଜୀରକ, ୯। ଜବାନ, ୧୨। ତଳି, ୧୩। ମୁଲାକାତ, ୧୪। ଚକ୍କର, ୧୬। ସହାନୁଭୂତି ।

**ଉପରୁ ତଳ--** ୧। ଅରୁଚି, ୨। କପିଧ୍ୱଜ, ୪। ସରଣୀ/ସଡ଼କ, ୫। ତବିଅତ, ୭। ଅୟନ, ୧୦। ବାତ, ୧୧। ଝୁମୁକା, ୧୫। ରତି ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ -- **ଦୀକ୍ଷା ଦେଓ,** କରଞ୍ଜିଆ, ମୟୂରଭଞ୍ଜ; **କୁମାର ଅଭିଜିତ୍ ନାୟକ,** ବାଟିଯୋଡ଼ା, ଜେନାପୁର, ଯାଜପୁର; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର; **ଚନ୍ଦ୍ରଶେଖର ମିଶ୍ର,** ଚମ୍ପୁଆ, କେନ୍ଦୁଝର ।

ଏକ ଭୁଲ୍ ଉତ୍ତର -- **ଅଲିଭା ବେହେରା, ସ୍ୱାମୀଶ୍ରୀ ଜୟଦେବ ଭାରତୀ ।**

**ଧଣ୍ଡାମୁଣ୍ଡା, ବଲାଙ୍ଗିରରୁ ସ୍ୱାମୀ ଶ୍ରୀ ଜୟଦେବ ଭାରତୀ--** ଶବ୍ଦଧନ୍ଦା ସମସ୍ତଙ୍କ ପାଇଁ ଉପଯୋଗୀ। ଧନ୍ଦାକର୍ତ୍ତାଙ୍କ ନିମିତ୍ତ କିଛି ନିବେଦନ- ୧) ଧନ୍ଦାଟି ନିର୍ଭୁଲ ହୋଇଥିବ, ୨) ପ୍ରତିଟି ଶବ୍ଦ ସହ ବାମ ଡାହାଣ ଠିକ ଭାବେ ସଂଯୁକ୍ତ ହେଉଥିବ। ସେପ୍‌ଟେମ୍ବର ସଂଖ୍ୟାରେ ଝୁମୁକାର ଅର୍ଥ ଶିଶୁ ଖେଳନା ନୁହେଁ, ଏକ ଖେଳନା ବିଶେଷ ହେବ ।

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୯ । ୮-- ପଶ୍ଚିମ ଓଡ଼ିଶାର ୯ଟି ଜିଲ୍ଲାରେ ପୌର ନିର୍ବାଚନ ସ୍ଥଗିତ ।

୨ । ୯-- ବିଶିଷ୍ଟ କବି ତଥା ସମାଲୋଚକ ଡକ୍ଟର ହରପ୍ରସାଦ ଦାସ ଦ୍ୱିତୀୟ ଓଡ଼ିଆ ଭାବେ ସମ୍ମାନ ଜନକ 'ମୂର୍ତ୍ତି ଦେବୀ-୨୦୧୩' ପୁରସ୍କାର ପାଇବାକୁ ମନୋନୀତ ।

୧୦ । ୯-- ଜାତୀୟ ଓପନ୍ ଆଥେଲେଟିକ୍ ଚାମ୍ପିୟନ୍‌ସିପ୍‌ରେ ଐତିହାସିକ ସଫଳତା ହାସଲ କରିଛନ୍ତି ପ୍ରଥମ ଓଡ଼ିଆ ଭାବେ ଦୁତୀ ଚାନ୍ଦ ଓ ଅମୀୟ ମଲ୍ଲିକ୍ ।

୧୬ । ୯-- ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଚୋକଲିଙ୍ଗମ୍ ନାଗପ୍ପାନ୍ ସୁପ୍ରିମ୍‌କୋର୍ଟର ବିଚାରପତି ନିଯୁକ୍ତ । ଓଡ଼ିଶା ହାଇକୋର୍ଟର ମୁଖ୍ୟ କାର୍ଯ୍ୟକାରୀ ବିଚାରପତି ଭାବେ ପ୍ରଦୀପ ମହାନ୍ତିଙ୍କର ଦାୟିତ୍ୱ ଗ୍ରହଣ ।

## ଭାରତ ଖବର

୨୬ । ୮-- ପୋଲାଣ୍ଡରେ ଚାଲିଥିବା ବିଶ୍ୱକପ୍ ତୀରନ୍ଦାଜୀରେ ଭାରତୀୟ ମହିଳା ଦଳର ଚମ୍ପିଆନ୍ ଆଖ୍ୟା ହାସଲ ।

୨୬ । ୮-- କ୍ରମାଗତ ଭାବରେ ବିଶ୍ୱର ଅବମୂଲ୍ୟାୟନ ଯୋଗୁଁ ଭାରତର ଅର୍ଥନୀତି ବିପନ୍ନ । ୧ ଡଲାର-୬୬.୮୦ଟଙ୍କା ।

୨୯ । ୮-- ଇଣ୍ଡିଆନ୍ ମୁଜାହିଦ୍ଦିନର ପ୍ରତିଷ୍ଠାତା ୟାସିନ୍ ଭଟବଲ୍ ଗିରଫ ।

୨ । ୯-- ଗୁରୁତର ମାମଲାରେ ଗୁରୁ ଆଶାରାମ ବାପୁ ୧୪ ଦିନିଆ ବିଚାର ବିଭାଗୀୟ ହାଜତକୁ ଗଲେ ।

୫ । ୯-- ୫୦ ବର୍ଷ ବୟସ୍କ ରଘୁରାମ ରାଜନଙ୍କର ଭାରତୀୟ ରିଜର୍ଭ ବ୍ୟାଙ୍କର ଗଭର୍ଣ୍ଣର ଭାବେ ଦାୟିତ୍ୱ ଗ୍ରହଣ ।

୭ । ୯-- ଜୁବିନ୍ ମେହେଟ୍ଟା ୨୦୧୩ ବର୍ଷ ଲାଗି ସମ୍ମାନ ଜନକ ଟାଗୋର ପୁରସ୍କାରରେ ସମ୍ମାନିତ ।

୮ । ୯-- ପ୍ରଥମ ଦକ୍ଷିଣ ଆଫ୍ରିକା-ଭାରତ ଚଳଚ୍ଚିତ୍ର ଓ ଟେଲିଭିଜନ ପୁରସ୍କାର ସମାରୋହରେ 'ବର୍ଫି' ଶ୍ରେଷ୍ଠ ଚଳଚ୍ଚିତ୍ର ଏବଂ ରଣବୀର କପୁର ଓ ପ୍ରିୟଙ୍କା ଚୋପ୍ରାଙ୍କର ଯଥାକ୍ରମେ ଶ୍ରେଷ୍ଠ ଅଭିନେତା ଓ ଅଭିନେତ୍ରୀ ଟ୍ରଫି ହାସଲ ।

--ଉତ୍ତର ପ୍ରଦେଶର ମୁଜାଫର ନଗରଠାରେ ଦୁଇ ସମ୍ପ୍ରଦାୟଙ୍କ ମଧ୍ୟରେ ସଂଘର୍ଷ ଘଟି ୨୬ ଜଣ ମୃତ ଓ ୫୦ରୁ ଉର୍ଦ୍ଧ୍ୱ ଆହତ ।

୧୦ । ୯-- ବହୁଚର୍ଚ୍ଚିତ ଦିଲ୍ଲୀ ଗଣବଳାତ୍କାର ଘଟଣାରେ ୪ ଜଣ ଅଭିଯୁକ୍ତଙ୍କୁ ଫାଶୀ ଦଣ୍ଡାଦେଶ ।

୧୩ । ୯-- ଆଗାମୀ ନିର୍ବାଚନରେ ନରେନ୍ଦ୍ର ମୋଦିଙ୍କୁ ପ୍ରଧାନମନ୍ତ୍ରୀ ପ୍ରାର୍ଥୀ କରିବା ଲାଗି ବି.ଜେ.ପି.ର ନିଷ୍ପତ୍ତି ଗ୍ରହଣ ।

## ବିଦେଶ ଖବର

୨୮ । ୮-- ଓ୍ୱାଶିଂଟନର ଲୁଣ୍ଡ ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନୀ ଗବେଷକମାନଙ୍କ ଦ୍ୱାରା ଏକ ନୂତନ ମୌଳିକ ପଦାର୍ଥ ଆବିଷ୍କୃତ । ଏହାଦ୍ୱାରା ମୋଟ ମୌଳିକ ପଦାର୍ଥର ସଂଖ୍ୟା ୧୧୫ରେ ପହଞ୍ଚିଛି ।

୩ । ୯-- ସିରିୟାରେ ରାସାୟନିକ ଅସ୍ତ୍ର ପ୍ରୟୋଗ ଯୋଗୁଁ ୧୪୨୯ ଲୋକଙ୍କ ପ୍ରାଣହାନି ।

୬ । ୯-- ଭାରତୀୟ ଲେଖିକା ୪୯ ବର୍ଷିଆ ସୁସ୍ମିତା ବାନାର୍ଜିଙ୍କୁ ଆଫଗାନିସ୍ତାନରେ ହତ୍ୟା ।

--ଦୀପକ ସାନ୍ଧୁଙ୍କର ଭାରତର ପ୍ରଥମ ମହିଳା ମୁଖ୍ୟ ସୂଚନା ଆୟୁକ୍ତ ଭାବରେ ଦାୟିତ୍ୱ ଗ୍ରହଣ ।

୮ । ୯-- ମାଳଦ୍ୱୀପରେ ରାଷ୍ଟ୍ରପତି ନିର୍ବାଚନରେ କାହାକୁ ଅନୁମତି ନ ମିଳିବାରୁ ପୁନଶ୍ଚ ଭୋଟ୍ ଗ୍ରହଣ ହେବ ।

୮ । ୯-- ପାକିସ୍ତାନରେ ରାଷ୍ଟ୍ରପତି ଆସିଫ୍ ଅଲ୍ଲୀ ଜର୍ଦାରୀଙ୍କ ପରେ ଭାରତ ଜନ୍ମିତ ମାମନୁନ୍ ହୁସେନ୍ ପରବର୍ତ୍ତୀ ରାଷ୍ଟ୍ରପତି ।

୧୦ । ୯-- ସ୍ପେନ୍‌ର ୨୭ ବର୍ଷ ବୟସ୍କ ରାଫେଲ୍ ନାଦାଲ୍ ଚଳିତ ସିଜିନ୍‌ର ଅନ୍ତିମ ଗ୍ରାଣ୍ଡ୍ ସ୍ଲାମ୍ ଟେନିସ୍ ଟୁର୍ଣ୍ଣାମେଣ୍ଟ୍ ୟୁ.ଏସ୍ ଓପନ୍‌ରେ ପୁରୁଷ ଚମ୍ପିୟନ୍ ହୋଇଛନ୍ତି ।

୧୩ । ୯-- ଉତ୍ତର ପଶ୍ଚିମ ରୁଷିଆର ଏକ ଡାକ୍ତରଖାନାରେ ଅଗ୍ନିକାଣ୍ଡ ଘଟି ୩୭ ଜଣଙ୍କର ପ୍ରାଣହାନି ।

୧୬ । ୯-- ଓ୍ୱାଶିଂଟନ୍‌ର ନେଭିୟାର୍ଡରେ ଆତଙ୍କବାଦୀ ଆକ୍ରମଣ ଯୋଗୁ ୧୨ ଜଣ ମୃତ ଓ ୧୦ ଜଣ ଆହତ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597